

## ଲେଖିକାଙ୍କ ପ୍ରବନ୍ଧ ବିଭବ

ନାରୀ ନୀତି ନିୟତି

ଦୃଷ୍ଟି ଓ ଦିଗନ୍ତ

ପ୍ରଗତି ଓ ପରମ୍ପରା

ପ୍ରଳୟ ପରର ଜୀବନ

## : ଲୋକ କଥା ସଂଗ୍ରହ :

କଳାହାଣ୍ଡିର ଲୋକ କଥା

ସମୟସଚେତନ
ଅପ୍ରତିରୋଧ୍ୟ କଥାଶିଳ୍ପୀ
ଡ. ବାସନ୍ତୀ ମହାନ୍ତିଙ୍କ
ତୀକ୍ଷ୍ଣ କଲମରେ ଧର୍ମ,
ସମାଜ, ସଂସ୍କୃତି, ପ୍ରକୃତି ଓ
ଆଧୁନିକ ମଣିଷର ବିପନ୍ନତା
ସାବଲୀଳ ଭାବେ ମିଶିଅଛି
ତାଙ୍କ ପ୍ରବନ୍ଧ ସାହିତ୍ୟରେ ।

# ଅଭିଯୁକ୍ତା



## ଡ. ବାସନ୍ତୀ ମହାନ୍ତି

PCI ପି.ସି.ଆଇ. ପବ୍ଲିକେଶନ

୩୨, ଖାରବେଳ ନଗର, ସଚିବାଳୟ ମାର୍ଗ, ୟୁନିଟ୍ - ୩, ଭୁବନେଶ୍ୱର-୧

Ph. : 0674 - 6999993, Mob. : 9861013922

Price : ₹ 100/- ମୂଲ୍ୟ : ଟ.୧୦୦/-

# ଅଭିଯୁକ୍ତା

ଡ. ବାସନ୍ତୀ ମହାନ୍ତି

ପ୍ରକାଶକ: ପି.ସି.ଆଇ. ପବ୍ଲିକେଶନ
୩୨, ଖାରବେଳ ନଗର, ସଚିବାଳୟମାର୍ଗ
ୟୁନିଟ୍-୩, ଭୁବନେଶ୍ୱର-୧

ଦ୍ୱିତୀୟ ସଂସ୍କରଣ : ରାଜଧାନୀ ପୁସ୍ତକ ମେଳା ୨୦୧୭

ମୁଦ୍ରଣ : ପ୍ରେସ୍‌ମ୍ୟାନ, ଭୌମନଗର
ଭୁବନେଶ୍ୱର-୧

ମୂଲ୍ୟ : ୧୦୦ ଟଙ୍କା ମାତ୍ର



# ABHIJUKTA

by : **Dr. Basanti Mohanty**

Published by :
**Basanta Kumar Mohanty**
PCI Publication
S.C.R.-32, Kharvel Nagar
Unit-3, Bhubaneswar-1
Email- **pcipublication@gmail.com**

**2nd Edition : Rajdhani Book Fair-2017**

**Printed At :** Pressman
Bhouma Nahar, Bhubaneswar-1

**Price : ₹ 100.00 only**

# ଉତ୍ସର୍ଗ

ନିୟତିର ଉତ୍ତପ୍ତ ନିଃଶ୍ୱାସରେ ଜୀବନର ମଧୁରତମ ପୁଷ୍ପଗୁଚ୍ଛକୁ ଜାଳିପୋଡ଼ି ପରିଶେଷରେ ଯେଉଁମାନେ ପିନ୍ଧିଛନ୍ତି ଜ୍ୱାଳାର ପୁଷ୍ପମାଳା, ତାଙ୍କର ପ୍ରତିଟି ପଦକ୍ଷେପକୁ ସୁଦୃଢ଼ କରିବା ପାଇଁ ଯେଉଁମାନେ ସୃଷ୍ଟି କରି ଚାଲିଛନ୍ତି ଶୀତଳ ଲୁହାର ସୁ-କଠିନ ସୋପାନ, ତାଙ୍କର କ୍ଳାନ୍ତ ଯୁଗ୍ମ ପଦରେ ଯେଉଁମାନେ ନାଚି ଚାଲିଛନ୍ତି ବିଷମ ତାଳର ନୃତ୍ୟାୟିତଛନ୍ଦ- ଜୀବନର ଜାଗ୍ରତ ମରୁରେ, ଯେଉଁମାନେ ରଚନା କରିବାକୁ ଶପଥ ନେଇଛନ୍ତି ଶାନ୍ତିର ନିକେତନ ତଥା ଜୀବନ ସାଧନାର ସାଗ୍ନିକ-ସ୍ୱର୍ଗ, ଜୀବନ ସମସ୍ୟା ବିରୁଦ୍ଧରେ ସଂଗ୍ରାମ ଚଳାଇ ଜବରଦସ୍ତ ବଞ୍ଚିବା ପାଇଁ ଯେଉଁମାନେ ନେଇଛନ୍ତି ଏକ ଅନିର୍ବାଣ ଆଗ୍ନେୟଦୀକ୍ଷା : ମୋ ଗଳ୍ପ 'ଅଭିଯୁକ୍ତା' ଚରିତ୍ରରେ ସେଇସବୁ ସୁଶୀଳାମାନଙ୍କ ଉଦ୍ଦେଶ୍ୟରେ... ।

- ବାସନ୍ତୀ ମହାନ୍ତି



# ଲେଖିକାଙ୍କ ଅନ୍ୟାନ୍ୟ ସୃଷ୍ଟି

- ରାଜଜେମା, ବିଲେଇ ଓ ଢୁଲି ପ୍ରସଙ୍ଗ
- ଅଭିଯୁକ୍ତା
- ନାରୀ ନୀତି ନିୟତି
- ଦୃଷ୍ଟି ଓ ଦିଗନ୍ତ
- ପ୍ରଗତି ଓ ପରମ୍ପରା
- କଳାହାଣ୍ଡିର ଲୋକକଥା
- ପ୍ରଳୟ ପରର ଜୀବନ
- ଦାଦନ
- ପିତୃଋଣ
- ସୁଲିଅପାର ଭାତୁଡ଼ି
- ମା'
- ନୀଳଶୈଳର ପଦଚାରୀ
- ନିର୍ବାଚିତ ଗଳ୍ପ
- କୁନ୍ତୀ

# କିଛିକଥା

'ଅଭିଯୁକ୍ତା'ର ପ୍ରଥମ ସଂସ୍କରଣର ଭୂମିକା ଲେଖାଯାଇ ନଥିଲା । ଲେଖାଯାଇ ନଥିଲା ଅର୍ଥାତ୍ ମୁଁ ଲେଖିପାରି ନଥିଲି । ସଂସ୍କରଣସ୍ଥ ଗଳ୍ପଗୁଡ଼ିକ ପାଇଁ ମୁଁ ମୋର ସକଳ ସାମର୍ଥ୍ୟ ଚିପୁଡ଼ି ନିଗାଡ଼ି ଦେଇଥିଲି, ଯାହା ମୋର ବକ୍ତବ୍ୟ ଚରିତ୍ରମାନଙ୍କ ଭିତରେ ଫୁଟେଇ ସାରିଥିଲି । ସେତେବେଳେ ପ୍ରକାଶକଙ୍କ ଅନୁରୋଧରେ ଭୂମିକାଟିଏ ଲେଖିବସିଲି, କିଛି ହେଲାନାହିଁ । ବୋଧହୁଏ ମୋର ଆଉ କିଛି କହିବାର ନଥିଲା । ଏବେ ଦ୍ୱିତୀୟ ସଂସ୍କରଣର ଅବସର ।

'ଅଭିଯୁକ୍ତା'ର ସବୁ ଚରିତ୍ର ମୋର ଅଙ୍ଗନିଭା । ମୋ ଆଖପାଖର । ଡାକିଲେ ଓ' କରନ୍ତି । ହାତ ବଢ଼ାଇଲେ ଛୁଇଁ ହୁଅନ୍ତି । ସେମାନଙ୍କ ଜୀବନର ଦୁଃଖସୁଖ ମୋ ସାଙ୍ଗରେ ବାଣ୍ଟନ୍ତି । ମୁଁ ବି ସେଥିରେ ସାମିଲ୍ ହୋଇଯାଏ । କେତେବେଳେ ଓଦା ଆଖିରେ ତ କେତେବେଳେ ହସିଲା ଓଠରେ, ଆକଣ୍ଠ ପରିତୃପ୍ତିରେ । ମୋ ଚେତନ, ଅବଚେତନ ସବୁ ସମୟରେ । ସେମାନଙ୍କୁ ସାରସ୍ୱତ ରୂପ ନ ଦେବା ପର୍ଯ୍ୟନ୍ତ ସେମାନେ ମୋତେ ଆନ୍ଦୋଳିତ କରୁଥିଲେ । ବସେଇ ଉଠେଇ ଦେଉନଥିଲେ । କେବଳ ମୁଁ ନୁହେଁ, ମୋ ପାଠକ ଈଶ୍ୱରମାନେ ବି ସେଇ ଚରିତ୍ରମାନଙ୍କ ସହ ଏକାକାର ହୋଇ ପଡ଼ିଲେ ଅତିଶୀଘ୍ର । ଏଥିରେ ପ୍ରକାଶିତ ଗଳ୍ପଗୁଡ଼ିକ ତ ପୂର୍ବରୁ ଓଡ଼ିଶାର ପ୍ରମୁଖ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା ଓ ଯଥେଷ୍ଟ ପାଠକୀୟ ଶ୍ରଦ୍ଧା ଅର୍ଜନ କରିଥିଲା । ଗଳ୍ପଗୁଡ଼ିକ ଅଭିଯୁକ୍ତା ନାମରେ ପୁସ୍ତକ ଆକାରରେ ପ୍ରକାଶିତ ହେବା ପରେ ପୁଣି ଛୁଟି ଆସିଲା ଓଡ଼ିଶାର କୋଣ ଅନୁକୋଣରୁ ପାଠକୀୟ ଅନୁରାଗ । ସେହି ଅନୁରାଗର ଭାବ ବହନ କରି 'ଅଭିଯୁକ୍ତା' ଉଭାନ୍ ହୋଇଗଲା ବଜାରରୁ । ଫଳରେ ଦ୍ୱିତୀୟ ସଂସ୍କରଣର ସ୍ୱତଃ ଆବଶ୍ୟକତା ପଡ଼ିଲା ।

ଅଭିଯୁକ୍ତାର ଦ୍ୱିତୀୟ ସଂସ୍କରଣ ପାଇଁ ଅନୁକୂଳ ପରିବେଶ ସୃଷ୍ଟି କରିଥିବା ମୋ ଶ୍ରଦ୍ଧେୟ ପାଠକମାନଙ୍କୁ ଏହି ଅବସରରେ ଧନ୍ୟବାଦ ଅର୍ପଣ କରୁଛି । ମୋର ସାରସ୍ୱତ ଶୁଭେଚ୍ଛୁ ଓ ପିସିଆଇ ପ୍ରକାଶନୀ ସଂସ୍ଥାର ଅକୁଣ୍ଠ ସହଯୋଗ ବିନା ଏ ସଂସ୍କରଣ ସମ୍ଭବ ହୋଇପାରି ନଥାନ୍ତା । ଉକ୍ତ ପ୍ରକାଶନ ସଂସ୍ଥାକୁ ଏ ଅବସରରେ ମୋର ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ପ୍ରଥମ ସଂସ୍କରଣଠାରୁ ଏ ସଂସ୍କରଣଟି ଆହୁରି ବେଶି ପାଠକୀୟ ଆଦୃତି ଲାଭ କରିବ ବୋଲି ଆଶା କରୁଛି ।

**ବାସନ୍ତୀ ମହାନ୍ତି**

# ଅନୁକ୍ରମଣିକା





# ଅଭିଯୁକ୍ତା

ସୁଶୀଳା ହାତରେ ହାତକଡ଼ି । ଯେଉଁ ହାତ ଗୋଟାଏ ପରିବାର ମୁହଁରେ ପାଞ୍ଚ ବରଷ ହେଲା ଆହାର ଦେଇ ଆସୁଥିଲା, ଗୋଟାଏ କଅଁଳା ଛୁଆର ଯାବତୀୟ କାମ କରୁଥିଲା, ନିଜ ଅପେକ୍ଷା ଅନ୍ୟ ପାଇଁ ଉଦ୍ଦିଷ୍ଟ ଥିବା ସେଇ ହାତରେ ମହିଳା କନେଷ୍ଟବଳ ହାତକଡ଼ି ପକେଇ ଥାନାକୁ ନେଉଥିଲା ।

ଦେଖଣାହାରୀ ଥାଟ ପଟାଳି ଭାଙ୍ଗୁଥିଲେ । ସେ ଖାଲି ଡବଡବ କରି ସମସ୍ତଙ୍କ ମୁହଁକୁ ଚାହୁଁଥିଲା । ସେ ଆଖିରେ ଲୁହ ନଥିଲା । ଆଶଙ୍କା କି ଅବସୋସ ନଥିଲା । ଡାକ୍ତରଖାନାରେ ମୃତ୍ୟୁ ସହ ଦୀର୍ଘକାଳ ସଂଘର୍ଷ କରି ଶେଷରେ ସେ ବଞ୍ଚିଗଲା । ସେଇ ବଞ୍ଚିଯିବାଟା ତା' ପାଇଁ ଅପରାଧ । ତା'ର ଯଦି ମରଣ ହୋଇଯାଇଥାନ୍ତା, ତା' ବଦଳରେ ହୁଏତ ଆଉ କେହି ଏମିତି ଥାନାକୁ ଘୋଷରା ହୋଇ ଯାଇଥାନ୍ତା ।

କିଏ ଯାଇଥାନ୍ତା ?

ବିବାହ ବୟସ ଅତିକ୍ରାନ୍ତ ହୋଇଯାଉଥିବା ଦୁଇ ଦୁଇଟା ଅବିବାହିତା ଝିଅଙ୍କୁ ଘରେ ଧରି ବସିଥିବା ତା ଶାଶୁ ? ନା ପେନ୍‌ସନ୍ ପଇସାରେ ଘର ଚଳେଇ ପାରୁନଥିବା ତା' ଶ୍ୱଶୁର ନା ନିତି ରାତିରେ ମଦ୍ୟପାନ କରି ତାକୁ ଅକଥନୀୟ ଯନ୍ତ୍ରଣା ଦେଉଥିବା ଲୋକଟା ବଦଳି ଯାଇ ସ୍ତ୍ରୀପିଲାଙ୍କ ଦାୟିତ୍ୱ ନେବାକୁ ଅଣ୍ଟା ଭିଡୁଥିବା ତା' ସ୍ୱାମୀ ଅଥବା ବାହାଚୁଡ଼ା ହୋଇ ଘର ସଂସାର କରିବାର ସ୍ୱପ୍ନ ଦେଖୁ ଦେଖୁ ହତସ୍ୱପ୍ନ ହୋଇଥିବା ଦୁଇ ନଣନ୍ଦ, କାହାକୁ ବାନ୍ଧି ନେଇଥାନ୍ତା ପୋଲିସ ?

ସେତେବେଳେ କ'ଣ ହୋଇଥାନ୍ତା ପଛକୁ ଥାଉ, ଏବେ କିନ୍ତୁ ସୁଶୀଳା ମୁଣ୍ଡରେ ଛିଡ଼ି ପଡ଼ିଛି ଆକାଶ । ବାରବର୍ଷ ଜେଲ୍ ତ ସୁନିଶ୍ଚିତ । ତା' ସହ ଜୋରିମାନା ବି । ଫାଶୀ ଅର୍ଡର ହେବା ବି ଅସମ୍ଭବ ନୁହେଁ । ଜନତାଙ୍କ ଭିତରେ ଗୁଞ୍ଜରଣ ଖେଳିଯାଇଥିଲା ।

ସୁଶୀଳା ମୁଖମଣ୍ଡଳ ସମ୍ପୂର୍ଣ୍ଣ ଭାବଶୂନ୍ୟ ବୋଧ ହେଉଥିଲା । ତା' ଚାରିପଟ ମଣିଷମାନଙ୍କ ପ୍ରତି ସେ ସମ୍ପୂର୍ଣ୍ଣ ନିରାସକ୍ତ ଥିଲା । ମଲା ମାଛର ଆଖିଭଳି ବିବର୍ଣ୍ଣ ଦିଶୁଥିବା ତା' ଆଖି ଦୁଇଟାରେ ତା' ଜୀବନର ସକଳ ଦୁର୍ବିପାକ ଲେସି ହୋଇଯାଇଥିଲେ ବି ସେ ସମ୍ପୂର୍ଣ୍ଣ ନିର୍ଲିପ୍ତ ଜଣାପଡୁଥିଲା । ବାପଘରଠାରୁ ଶାଶୁଘର ପର୍ଯ୍ୟନ୍ତ ସେ ଯେତେ ସବୁ ଯନ୍ତ୍ରଣାକୁ

ଅନ୍ତଃସ୍ଥ କରିଛି ଆଉ କିଛି ବି ଦୁର୍ଦ୍ଦଶା ତାକୁ ତା' ଠାରୁ ବେଶି ବେଦନାଗ୍ରସ୍ତ କରିବ ବୋଲି ସେ କଥା ସେ ଭାବୁନଥିଲା ।

ପୁତ୍ର ସନ୍ତାନଟିଏ ପାଇଁ ଅପେକ୍ଷା କରିଥିବା ପିତା ମାତାଙ୍କର କ୍ରମାଗତ ପଞ୍ଚମ କନ୍ୟା ସନ୍ତାନକୁ ବାହାଦେବା ବେଳକୁ ତା' ଗଞ୍ଜାଡ଼ ବାପା ଶେଷ ସମ୍ବଳ ଘର ଡିହଟିକୁ ବି ବିକ୍ରି କରି ସାରିଥିଲା । ପାଞ୍ଚ ପାଞ୍ଚଟା କନ୍ୟା ସନ୍ତାନକୁ ଜନ୍ମ ଦେଇଥିବା ତା' ମାଆର ପୁତ୍ର ସନ୍ତାନ ଜନ୍ମ ହେବାର ଅକ୍ଷମତା ପ୍ରତି ଅହରହ ଅଙ୍ଗୁଳି ଦେଖାଉଥିବା ଓ ନିଜର ସୁଖ ସ୍ୱାଚ୍ଛନ୍ଦ୍ୟରେ ବାଧକ ହେଉଥିବା ପାଞ୍ଚଟା ଝିଅଙ୍କୁ ସଦା ସର୍ବଦା ଅଭିସମ୍ପାତ ବର୍ଷୁଥିବା ତା' ବାପା ସୁଶୀଳାର ସବାରୀକୁ ବିଦାୟ ଦେଇସାରି ଦୁଇ ହାତ ଛିଞ୍ଚାଡ଼ି ଦେଇ କହିଥିଲା- "ଯାଃ ଶଳା । ଗୋଟାଏ ଅଡୁଆ ତୁଟିଲା ।" ହଁ ଅଡୁଆ ନୁହେଁ ତ ଆଉ କ'ଣ । ଗୋଟିଏ ହେଲେ ପୁଅ ଜନ୍ମ କରି ଥାନ୍ତା । ହାରାମଜାଦୀ ମାଇକିନା । ପାଞ୍ଚ ପାଞ୍ଚଟା ଗଳଗ୍ରହ । ଗୋଟିଗୋଟି କରି ସଭିଙ୍କ ଅଡୁଆ ତୁଟେଇବାରେ ସାରା ଜୀବନ ଉଜୁଡ଼ିଗଲା । ଜୀବନ ସାରା ଗଧଖଟଣୀ ଖଟି ଯାହା ବି ଅର୍ଜନ କରି ଆଣିଲା ଏଇମାନଙ୍କ ମୁହଁରେ ଗଲା ସବୁ ।

ସୁଶୀଳା ବାହାଘର ପରେ ସତେ ଅବା ଗଙ୍ଗାସ୍ନାନ ସାରିଥିଲା ତା ବାପା । ଗୋଟିଏ ପଟେ ମା'ର ଅସହାୟତା ଆରପଟେ ଅସହିଷ୍ଣୁ ବାପାର ଅହଂକାର, ପେଶି ହୋଇଯାଉଥିଲା ପାଞ୍ଚ ପାଞ୍ଚଟା ଜୀବନର ସ୍ୱପ୍ନ କଳ୍ପନା ବଞ୍ଚିବାର ଅର୍ଥ ଓ ଉଦ୍ଦେଶ୍ୟ । ଶରଣାର୍ଥୀର ଜୀବନ ବଞ୍ଚି ଆସିଥିଲା ସେ ନିଜ ଜନ୍ମମାଟିରେ, ବଞ୍ଚିବାର ଦାବି ନାହିଁ, ଅଧିକାର ନାହିଁ, ଖୋଲାକଣ୍ଠରେ କଥାପଦେ କହିବାର ଜୁ ନାହିଁ । ନିପୀଡ଼ିତ ଜୀବନ, ଜୀବନ ନୁହେଁ ତ ଜୀବନ୍ତ ମରଣ । ଅନାଦର ଅବହେଳା, ଘୃଣା ଓ ଅପମାନକୁ ସମ୍ବଳ କରି ବଞ୍ଚି ଆସିଥିବା ସୁଶୀଳାକୁ ଗୋଟିଏ କର୍ମକୋଢ଼ୀ ନିକମା ମଦୁଆ ମଣିଷଟା ହାତରେ ଟେକି ଦେଇ ତା' ବାପା ଝିଅ ଦାୟରୁ ମୁକ୍ତ ହୋଇଗଲା । ଦେଲାନାରୀ ହେଲାପାରି । ବାହାଘର ପାଞ୍ଚ ବରଷ ବିତିଗଲେ ବି ଥରେ ଶଙ୍ଖୋଳି ଆସିଲା ନାହିଁ । ପିଲାଦିନେ ମାଆଠୁଁ ଶୁଣିଥିବା ଚକୁଳିଆ ପଣ୍ଡା କଥା ମନେପଡ଼େ ସୁଶୀଳାର । ପିଲା ବୟସରେ ବି ସେଇ ସାତକନ୍ୟାଙ୍କ ଅସହାୟତା ଭିତରେ ସେ ନିଜର ଭଉଣୀମାନଙ୍କ ଦୁର୍ଦ୍ଦଶା ଖୋଜି ହେଉଥିଲା ତ ଚକୁଳିଆ ପଣ୍ଡାର ନିର୍ମମତା ଭିତରେ ସେ ଖୋଜି ପାଉଥିଲା ତା' ଜନ୍ମକଲା ବାପାର ସ୍ୱରୂପ । ତା' ମୁଣ୍ଡ ଗୋଳମାଳ ହୋଇଯାଉଥିଲା । ଆତଙ୍କରେ ଶିହରି ଉଠୁଥିଲା । ମା'ଙ୍କୁ କୁଣ୍ଢେଇ ଶୋଇ ପଡୁଥିଲା ।

ରାତିରେ ଦେଖୁଥିଲା ସ୍ୱପ୍ନ । ତା' କଳ୍ପନାର ରାଜପୁତ୍ର ପକ୍ଷୀରାଜ ଘୋଡ଼ାରେ ଆସି ପାଞ୍ଚ ଭଉଣୀଙ୍କ ଭିତରୁ ତାକୁ ନିର୍ବାଚନ କରୁଥିଲା ଓ ତାରି ଗଳାରେ ମୁକ୍ତା ମାଳଟିଏ ଗଳେଇ ଦେଇ ଆକାଶ ମାର୍ଗକୁ ଉଡ଼ିଯାଉଥିଲା । ତାକୁ ଏତେ ଦୂରକୁ ଉଡ଼େଇ ନେଇଯାଉଥିଲା ଯେ ଭୟରେ ସେ ତଟସ୍ଥ ହୋଇଯାଉଥିଲା । ପକ୍ଷୀରାଜ ଆହୁରି ଉପରକୁ

ଉପରକୁ ଉଠୁଥିଲା । ମେଘ ଦେହରେ ପଶିଯାଉଥିଲା । ଅଚାନକ ଇନ୍ଦ୍ରଦେବତାର ରଥ ସହ ଧକ୍କା ଖାଇ କଟିଯାଉଥିଲା ତା' ଡେଣା । ସୂରୁଜ ଦେବତାର ତାତିଲା କିରଣରେ ରାଜକୁମାରର ସୁକୁମାର ଦେହ ଢଉଭଳି ତରଳି ପିଣ୍ଡୁଳାଟିଏ ହୋଇଯାଉଥିଲା । ସିଏ କୁଆ ପଥରଟିଏ ଭଳି ତଳକୁ ଖସି ପଡୁପଡୁ ଅଟକି ଯାଉଥିଲା ଡେଙ୍ଗା ତାଳଗଛ ବାହୁଙ୍ଗା ଉପରେ । ସେ ଭୟରେ ଚିତ୍କାର କରି ଉଠୁଥିଲା । ନିଦ ବାଉଳାରେ ତା' ଉପରେ ହାତ ବୁଲେଇ ଆଣି ମାଆ କହୁଥିଲା-

"ଡରିଲୁ କି ସୁଶୀ ! କଡ଼େଇ ଶୁଅ । ଚିତ୍ ହେଇ ଶୋଇଛୁ । କାଳପୁରୁଷ ମାଡ଼ି ବସିବ ?"

ତା' ବାପା କିନ୍ତୁ କନ୍ୟାଦାୟରୁ ମୁକ୍ତ ହେବା ପାଇଁ ଯାହା ବେକରେ ଛନ୍ଦିଦେଲା ସେ କାଳ ପୁରୁଷଠୁଁ କୌଣସି ଗୁଣରେ କମ୍ ନଥିଲା । ରାତି ଅଧରେ ସେ ନିଶାସକ୍ତ ହୋଇ ଆସୁଥିଲା ଓ ପ୍ରତିଦିନ ସେଇ ଅନ୍ଧାରରେ ତାର ରକ୍ତ ଶୋଷୁଥିଲା । ପଳ ପଳ କରି ତା'ର ମାଂସ ଛିଣ୍ଡାଇ ଖାଉଥିଲା । ପ୍ରତିବାଦ କଲେ ଅଶ୍ରାବ୍ୟ ଗାଳିରେ, ବିଦା ଗୋଇଠାରେ ତା' ହାଡ଼ ମାଉଁସ ଏକାକାର ହୋଇ ଯାଉଥିଲା । ପ୍ରତି ରାତ୍ରି ତା' ପାଇଁ ଥିଲା କାଳ ରାତ୍ରି । ସେଇ କାଳରାତ୍ରି ପାହୁ ନ ପାହୁଣୁ ସିଏ ପୁଣି ଲୋଟଣୀ ପାରା ଭଳି ଲୋଟିଯାଉଥିଲା । ବାସି ପାଇଟିଠୁଁ ଆରମ୍ଭ କରି ଗୋଡ଼ ମୋଡ଼ିବା ପର୍ଯ୍ୟନ୍ତ, ମଝିରେ ମଝିରେ ଦୁଇ ନଣନ୍ଦଙ୍କର ସ୍ୱତନ୍ତ୍ର ଫର୍ମାଇସ୍ । ସବୁ ସିଏ ସମ୍ଭାଳୁଥିଲା । ଟିକିଏ ଆଡ଼ବାଙ୍କ ହେଲେ ବାପଘରର ତେରଙ୍ଗ ତୋରଣୀ ଉଝାଳୁଥିଲେ ସେମାନେ । ସାଙ୍କୁଡ଼ି ଯାଉଥିଲା ସିଏ । କୋଉ ଦମ୍ଭ ତା' ବୋପା ରଖିଛି ଯେ ସେ ସେମାନଙ୍କ ପାଇଁ ଯୁଝିବ ? ତୁନି ପଡ଼େ । କେତେବେଳେ କପାଳକୁ ନିନ୍ଦେ ତ କେତେବେଳେ ବିଧାତାକୁ ଗାଳିଦିଏ । ଜୀବନର ସ୍ୱପ୍ନ କ'ଣ ଦେଖିବ ମନେ ମନେ ମରଣକୁ ଆବାହନ କରେ । ଯମ ପାଖରେ କାନି ପାତି ମୃତ୍ୟୁ ଭିକ୍ଷା କରେ ।

ଦିନେ ସୁଶୀଳା ଆବିଷ୍କାର କଲା, ତା' ଭିତରେ ଗୋଟାଏ ସତ୍ତା ପ୍ରାଣ ପ୍ରତିଷ୍ଠା ଲୋଡୁଛି । ପ୍ରକାଶ ପାଇଁ ଆତୁର ହେଉଛି । ସବୁ ଯନ୍ତ୍ରଣା ଭିତରେ ଏକ ଗୌରବବୋଧ ତାକୁ ବତୁରେଇ ଦେଲା । ଘଡ଼ିକ ପାଇଁ ଆନନ୍ଦ ଉଲ୍ଲାସରେ ସେ ଉତ୍‌ଫୁଲ୍ଲିତା ହୋଇପଡ଼ିଲା । ଗୋଟିଏ ଗଭୀର ଆତ୍ମପ୍ରତ୍ୟୟର ଆଭା ତାକୁ ଦୃଢ଼ କରିଦେଲା । ଏଇ ଅନାଗତ ଭବିଷ୍ୟତ ତା ଯନ୍ତ୍ରଣାର କଂସାକବାଟ ଭାଙ୍ଗି ତାକୁ ମୁକ୍ତି ଦେବ । ଶାପମୁକ୍ତ କରିବ । ଅନ୍ୟମାନଙ୍କ ପାଖରେ ସେ ମୁଣ୍ଡ ଟେକି ବାଟ ଚାଲିବ । ଅଲୋଡ଼ା ଅଖୋଜା ହୋଇ ନୁହେଁ । ସେ ମର୍ଯ୍ୟାଦାବତୀ ହୋଇ ବଞ୍ଚିବ, ଜୀବନ ତା ପାଇଁ କେତେ କେତେ ରାହା ଫିଟେଇ ଦେବ । ସେ ଚାଲିବ, ଚାଲିବ, ପାଦ ଥକି ନଯିବା ପର୍ଯ୍ୟନ୍ତ । ତାକୁ କେହି ସାହାରା ଦିଅନ୍ତୁ ନ ଦିଅନ୍ତୁ ସେ ତା ପାଇଁ ନିଜେ ସାହାରା ହେବ । ସେ ନିଜ ପେଟ ଉପରେ ହାତ ବୁଲେଇ ଆଣିଲା । ଗୋଟିଏ ଅତିନ୍ଦ୍ରୀୟ ଚେତନାରେ ମୁହୂର୍ତ୍ତକ ପାଇଁ ସେ ଆନମନା ହୋଇପଡ଼ିଲା ।

ସ୍ୱାମୀ ନାମଧାରୀ ଲୋକଟାକୁ ଏ ଖୁସିର ଖବର ଦେଇଥିଲା । ଅହରହ ନିଜର ପୁରୁଷପଣ ଜାହିର କରୁଥିବା ଦୁର୍ଦ୍ଦାନ୍ତ ମଣିଷଟା ସେଦିନ ନରମ ପଡ଼ିଯାଇଥିଲା । ସ୍ନେହ ବତୁରା କଣ୍ଠରେ ସୁଶୀଳାକୁ ଆଦର କରିଥିଲା । ସେଇ ଆଦରରେ ଅତୀତର ସକଳ ଲାଞ୍ଛନା ଓ ଅପମାନକୁ ମୁହୂର୍ତ୍ତକ ଭିତରେ ସେ ପାଶୋରି ପକାଇଥିଲା । ଗୋଟାଏ ନୂଆ ସକାଳର ମୋହରେ ସେ ତା' ଛାତିକୁ ଆଉଜି ପଡ଼ିଥିଲା ।

ଏ ଖୁସି ଖବରଟା ପରିବାରର ଅନ୍ୟ କାହାକୁ ସୁଖୀ କଲାଭଳି ବୋଧ ହେଲା ନାହିଁ । ଶାଶୁ ମୁହଁ ମୋଡ଼ି କହିଲା- "ମଲା ! ବୋପାର ପେନ୍‌ସନ୍‌କୁ ତ ଦୁଇଟାଯାକ ଭରସା କରି ପଡ଼ିଛ । ଆହୁରି ଗୋଟାଏ ଆସିବ । ତା' ପାଇଁ କି ବ୍ୟବସ୍ଥା କରିଛ ? ବେଳ କ'ଣ ପଳଉଥିଲା ? ଆଉ ଦି' ବରଷ ଗଡ଼ିଯାଇଥିଲେ ହେଇନଥାନ୍ତା ? ପଇସାଟିଏ ଅର୍ଜିବାକୁ ଆଣ୍ଠ ନାଇଁ, ଖାଲି ଜନମ କରିବାକୁ ହମ ହମ ।"

ସୁଶୀଳାର ସରାଗର ଫୁଲ ବଗିଚାକୁ କିଏ ଯେମିତି ଦଳି ମକଚି ନଷ୍ଟ କରିଦେଲା । ଗୋଟାଏ ଅପରାଧ ଭାବ ତାକୁ ଆଚ୍ଛନ୍ନ କରି ଦେଲା, ତାକୁ ମନେହେଲା ସେ ପାପ କରିଛି । ଯାହାକୁ ତା' ପାଇଁ ବହୁବାଞ୍ଛିତ ଅନ୍ୟମାନଙ୍କ ଦୃଷ୍ଟିରେ ସିଏ ହୀନ, ହେୟ, ଅବାଞ୍ଛିତ । ଇୟେ ସବୁ ତା' ସ୍ୱାମୀର ଅଯୋଗ୍ୟ ପଣର ହେତୁ । ଗେରସ୍ତ ଅଯୋଗ୍ୟ ପଣେ ଭାରିଜା ଶୋଇଚି ଚାକୁଣ୍ଡା ବଣେ । ସ୍ୱାମୀକୁ ବଶ କରିବାକୁ ହେବ । ତାକୁ ଯୋଗ୍ୟ କରିବାକୁ ହେବ । ନିଜପାଇଁ ନ ହେଲା ନାହିଁ । ଏଇ ଅନାଗତ ଭବିଷ୍ୟତ ପାଇଁ । ପିତା ହେବାର ଖବର ପାଉ ପାଉ ଲୋକଟା ଯେମିତି ବିଗଳିତ ହୋଇପଡ଼ିଲା, ସେଇ ଅନୁଭବକୁ ପାଥେୟ କରି ସେ ତାକୁ ପରିବର୍ତ୍ତନ କରିପାରିବ ବୋଲି ଆଶା ବାନ୍ଧି ବସିଲା । ପିତୃତ୍ୱର ଗୌରବରେ ଫୁଲି ଉଠୁଥିବା ଲୋକଟା ସୁଶୀଳା ପ୍ରତି ଟିକେ ନରମ ହୋଇ ଆସୁଥିଲା । ଏ ସୁଯୋଗ ସେ ହାତଛଡ଼ା କଲାନାହିଁ । କାନେ କାନେ ଶିଖେଇଲା । ଅଗଣାରେ ବସା ବାନ୍ଧିଥିବା ପାରା ଯୋଡ଼ିକୁ ଦେଖେଇଲା । ପୁରୁଷ ପାରାଟି ଫୁର୍‌ର କିନା ଉଡ଼ିଯାଇ କାଠି ଖଣ୍ଡେ ଆଣି ମାଈ ପାରାକୁ ବଢ଼େଇ ଦେଉଛି । ମାଈ ପାରାଟି ତାକୁ ସଜାଡ଼ି ଦେଉଛି । ପୁରୁଷ ପାରାଟି ପୁଣି ଫୁର୍‌ର କିନା ଉଡ଼ିଯାଇ ଆଉ ଖଣ୍ଡେ କାଠି ଆଣୁଛି ତ ମାଈ ପାରାଟି ତା' ଥଣ୍ଟରେ କାଠିଟି ନେଇ ଅଣ୍ଡାଦେବା ଜାଗାଟି ମୁଲାୟମ କରିଦେଉଛି । ଦିନସାରା ଏମିତି ବ୍ୟସ୍ତ ରହୁଛନ୍ତି ପାରା ଦୁଇଟା । ସୁଶୀଳା କହିଲା, ପଶୁପକ୍ଷୀ ପୋକ ଜୋକ, ଜନ୍ଦାପିମ୍ପୁଡ଼ି ବି ଛୁଆପିଲାଙ୍କ ପାଇଁ ବ୍ୟବସ୍ଥା କରୁଛନ୍ତି । ତମେ ମଣିଷ, ଭଗବାନ ତୁମକୁ ସୁସ୍ଥ ସବଳ କରି ଜନ୍ମ ଦେଇଛନ୍ତି । ତମର ରକ୍ତ ଦୁନିଆକୁ ଆସିବ । ତା' ପାଇଁ ତମର କିଛି ବି କର୍ତ୍ତବ୍ୟ ନାହିଁ ।

ସ୍ୱାମୀ କହିଲା- ତମେ ମୋ ଆଖି ଖୋଲି ଦେଇଚ । ତମ ଦେହ ଛୁଇଁ କହୁଚି, ମୁଁ ନିଶାପାଣି ସବୁ ଛାଡ଼ିଦେବି । ମୁଁ ବାପା ହେବି ତ ବାପାର କର୍ତ୍ତବ୍ୟ କରିବି ।

ସତକୁ ସତ ସେ ବଦଳି ଗଲା । ରାତି ଅଧ ତିନି ପହରେ ଘରକୁ ଫେରୁଥିବା ଲୋକଟା ସଂଜ ନ ହେଉଣୁ ଘରକୁ ଫେରି ଆସିଲା । ସୁଶୀଳାର ଦୂରସମ୍ପର୍କୀୟ ଜଣେ ମାମୁଙ୍କର ଗୋଟାଏ ହୋଲସେଲ ଲୁଗା ଦୋକାନ ଥିଲା । ସୁଶୀଳା ଚିଠି ଖଣ୍ଡିଏ ଦେଇ ତାକୁ ସେଇଠିକି ପଠେଇଲା । ମାମୁଙ୍କୁ ସୁଶୀଳାର ଦୁରବସ୍ଥା ଅମାଲୁମ ନଥିଲା । ତା ଦୋକାନରେ ହିସାବପତ୍ର ରଖିବା ପାଇଁ ତାକୁ ରଖିଦେଲା । ସୁଶୀଳା ମୁହଁରେ ହସର ଝଲକ । ଭଗବାନ ତା ଡାକ ଶୁଣିଲେ । ସ୍ୱାମୀଟା ଘରମୁହାଁ ହେଲା ।

ଅଭିଆଡ଼ୀ ନଣନ୍ଦ ଦୁଇଟା ସ୍ୱାମୀଙ୍କର ସ୍ନେହ ସରାଗ ଦେଖିପାରିଲେ ନାହିଁ । ଆଖି ମିଟିକା ମାରି ହସିଲେ ।

ଶାଶୁ ମୁହଁ ମୋଡ଼ି କହିଲେ- ଅଭିଲା ।

ଶେଷକୁ ସେଇ ପ୍ରତୀକ୍ଷିତ ମୁହୂର୍ତ୍ତଟି ଆସିଲା, କୁଆଁ କୁଆଁ ରାବରେ ପ୍ରସୂତୀଗୃହ ମୁଖରିତ ହୋଇଉଠିଲା । କବାଟ ଫାଙ୍କରେ ମୁହଁ ଗଳେଇ ଶାଶୁ ପଚାରିଲେ "କ'ଣ ହେଲା ?"

ଛୁଆଟାକୁ କୋଳକୁ ଉଠେଇ ନେଇ ହତବମ୍ଭ ହୋଇଗଲା ଧାଇ । ତା' ପାଟିରୁ କଥା ବାହାରୁ ନଥିଲା । ସତରେ ସେ ଯେମିତି ବାହାରର କୋଳାହଳ କିଛି ଶୁଣିପାରୁ ନଥିଲା ।

ଆଲୋ କାଲୁଣି ହେଲୁ କିଲୋ କାଳିଆ ମାଆ ! ପଚାରୁଛି ପରା କ'ଣ ହେଲା ? ଧାଇ ନରମ ଗଳାରେ କହିଲା- ଝିଅ ! ଶାଶୁଙ୍କ ମୁହଁ ଫିକା ପଡ଼ିଗଲା । କଣ୍ଠ ଓଜନିଆ କରି କହିଲେ, ଦି' ଦି'ଟା ଘରେ ବସିଛନ୍ତି, ପୁଣି ଆହୁରି ଗୋଟାଏ ।

ଚେତା ଫେରିଲା ପରେ ସୁଶୀଳାର ଛୁଆ ଉପରେ ନଜର ପଡ଼ିଲା । ତା' ହାଲୁକ ଶୁଖିଗଲା । ନିଜ ଆଖିକୁ ବିଶ୍ୱାସ କଲାନାହିଁ । କିଛି ଭୂଲ୍ ଦେଖିଲା କି ? ଦୁଇ ହାତରେ ଆଖି ଦୁଇଟାକୁ ମଳିଦେଇ ସେ ଆଉଥରେ ଦେଖିନେଲା । ଛୁଆଟା ତାକୁ ଏମିତି କାହିଁକି ଦିଶୁଛି ? ମାଦଳ ଭଳି । ହାତ ଦୁଇଟା କହୁଣୀ ପାଖରୁ ସରିଯାଇଛି, ଗୋଡ଼ ଦୁଇଟାର ଆଣ୍ଠୁ ତଳକୁ କିଛି ନାହିଁ । ସେ ଆଖି ମଳି ପୁଣି ଚାହିଁଲା । ସେଇ ଦୃଶ୍ୟ, ଜଗନ୍ନାଥଙ୍କ ଭଳି ମାଦଳ । ପାଦ ନାହିଁ କି ପାପୁଲି ନାହିଁ । ଭଲ କରି ତା'ହାତ ଗୋଡ଼ ଛୁଇଁ ପରୀକ୍ଷା କଲା । ସେ ଯାହା ଦେଖୁଛି, ତାହା ମନର ଭ୍ରମ ନୁହେଁ । ଦାରୁଣ ସତ କଥା । ସେ ଅପାଙ୍ଗ ଶିଶୁଟାଏ ଜନ୍ମ ଦେଇଛି । ତା'ର ସ୍ୱପ୍ନ କଳ୍ପନା ସବୁ ଧୂଳିସାତ୍ ହୋଇଛି । ସେ ଏକୁଟିଆ ଯନ୍ତ୍ରଣା ଭୋଗୁଥିଲା । ତା' ଦୁର୍ଦ୍ଦଶାରେ ସହଭାଗୀ ହେବା ପାଇଁ ଆଉ ଗୋଟାଏ ଆତ୍ମା ଆସି ଜୁଟିଗଲା । ଏ କି ବିଚାର ଭଗବାନଙ୍କର । ତାକୁ ପଳ ପଳ କରି ଦଗ୍ଧ କରିବାକୁ ଯେମିତି ଭାଗ୍ୟ ଓ ଭଗବାନଙ୍କର ଏ ଗୋଟାଏ ଚକ୍ରାନ୍ତ । ସେ କାନ୍ଦିବାକୁ ଚାହିଁଲା । ତଣ୍ଟି ଓ କଣ୍ଠ ଫଟେଇ । ଖୁବ୍ ଜୋର୍‌ରେ । ପାଟିଟା ଆଁ କରି ପାରୁ ପର୍ଯ୍ୟନ୍ତ ଚେଷ୍ଟା କଲା । କଣ୍ଠ

ପାଖରୁ ଗୋଟାଏ ବିକଟାଳ ଶବ୍ଦ ବାହାରିଲା । କାନ୍ଦ ତ ନୁହେଁ ବଞ୍ଚିବାର ସକଳ ଆଶା ଭରସା ତୁଟେଇଥିବା କଣ୍ଠାଗ୍ରତ ପ୍ରାଣ ମଣିଷର ସତେ ଅବା ଶେଷ ଚିତ୍କାର । ପାଟିଟା ସେମିତି ମେଲା ହୋଇ ରହିଗଲା ଅନେକ ସମୟ ପର୍ଯ୍ୟନ୍ତ ।

ଧାଈ ଛୁଆର ନାହି କାଟି ସାରି ସୁଶୀଳାକୁ ଟିକେ ହଲେଇ ଦେଇ କହିଲା- ଆଲୋ ହୀନିକପାଳୀ ! ହୀନ କପାଳ ନେଇ ତ ଜନମ ହେଇଚୁ ! ଆଉ କାନ୍ଦିଲେ କ'ଣ ହେବ ? ନେ- ନେ ଛୁଆକୁ କୋଳକୁ ନେ । ତା' ତଣ୍ଟି ଶୁଖିଯାଉଛି । ତାକୁ ଥନ ଦେ ।

ସୁଶୀଳା ପ୍ରକୃତିସ୍ଥ ହେଲା, ଛୁଆକୁ ଉଠେଇ କୋଳକୁ ଆଣିଲା । ତାକୁ ଛାତିରେ ଜଡ଼େଇ ଧରିଲା, ବକ୍ଷଚିରି ବାହାରିଗଲା ଅମୃତର ଧାରା । ଚଁ ଚଁ କରି ପିଇଗଲା ଶିଶୁଟି । ଏକ ଅପୂର୍ବ ପୁଲକରେ ଭରିଗଲା ସୁଶୀଳାର ହୃଦୟ । ସେ ଆଖି ବନ୍ଦ କରି ଅନୁଭବ କରୁଥିଲା ସେଇ ଦିବ୍ୟ ଚେତନାକୁ । ନଥାଉ ପଛେ ପାଦ ପାପୁଲି । ସେ ଏଇ ଛୁଆକୁ ମଣିଷ କରିବ । ତାକୁ ମଣିଷ କରିବା ପାଇଁ ସେ ଆକାଶପାତାଳ ଏକାକାର କରିଦେବ । ଖୁବ୍ ପାଠ ପଢ଼େଇବ ତାକୁ । ଦୁନିଆଁରେ ମଣିଷ ପରି ମଣିଷଟିଏ କରି ଗଢ଼ିଥୋଇବ । ସେ ଭାଗ୍ୟ ବିରୁଦ୍ଧରେ ଲଢ଼ିବ । ଭଗବାନଙ୍କ ବିରୁଦ୍ଧରେ ଠିଆ ହେବ । ମନେ ମନେ ଭୀଷ୍ମ ପ୍ରତିଜ୍ଞା କଲା ସୁଶୀଳା । ସେଇ ଥରକ ସେ ଯାହା କାନ୍ଦିଥିଲା । ଆଉ କାନ୍ଦିଲା ନାହିଁ କି ଦୁଃଖ କଲାନାହିଁ । ଜନମରୁ ତା' ପ୍ରତି ଅବିଚାର କରିଆସୁଥିବା ଭାଗ୍ୟ ଓ ଭଗବାନଙ୍କୁ ଆହ୍ୱାନ ଦେବା ଭଙ୍ଗୀରେ ସେ ଅଣ୍ଟା ଭିଡ଼ିଲା ।

ଶ୍ୱଶୁର, ଶାଶୁ ଓ ନଣନ୍ଦ ଛୁଆକୁ ଦେଖିଲେ । ପରିବାର ପାଇଁ ଚଣ୍ଡାଳୁଣୀଟା ପୁଣି ଗୋଟାଏ ଦୁର୍ଦ୍ଦଶା ଡାକିଆଣିଲା । କ'ଣ ହେବ ଏ ମାଦଳର ଭବିଷ୍ୟତ ? କେମିତି ବଞ୍ଚିବ ?

ପ୍ରମାଦ ଗଣିଲେ ସମସ୍ତେ । ଏଥିରୁ ନିବର୍ତ୍ତିବା ପାଇଁ ଦିନ ଦିନ ଧରି ମସୁଧା ମନ୍ତ୍ରଣା ଚାଲିଲା ।

ଛୁଆଟାକୁ ଦେଖି ସ୍ୱାମୀର ମନ ପୁରାପୁରି ଖରାପ ହୋଇଗଲା । ଭଙ୍ଗା ମନ ନେଇ ଅସହାୟ ଦୃଷ୍ଟିରେ ସ୍ତ୍ରୀକୁ ଚାହିଁଲା । ସେ ଚକ୍ଷୁ ଯେମିତି ସୁଶୀଳାକୁ କହୁଥିଲା, ଯାରି ପାଇଁ ଏତେ ଆଗତ ବିଚାର କରୁଥିଲ ? ମତେ ଅବାଟରୁ ବାଟକୁ ଆଣିଲ ? କ'ଣ କରିବା ଯାକୁ ନେଇ ? ଏଇ ପାଦ ପାପୁଲି ହୀନ ଛୁଆଟା ସଂସାରରେ ବଞ୍ଚି ରହିବ ? ଯୁଗରାଇଜ କରିବ ?

ସୁଶୀଳା ସେ ଚକ୍ଷୁ ଭାଷା ପଢ଼ିଲା । ଉଦ୍‌ଗତ କୋହକୁ ଦୁଇ ଓଠରେ ଚାପି ଅବରୁଦ୍ଧ କଲା । ସ୍ୱାମୀକୁ ହିମ୍ମତ ଦେବା କଣ୍ଠରେ କହିଲା- "ତମେ ବ୍ୟସ୍ତ ହୁଅନାହିଁ । ଶାରୀରିକ ଅକ୍ଷମତା ଆଜିକାଲି ଆଉ ସମସ୍ୟା ହୋଇନାହିଁ । ସରକାର ସେମାନଙ୍କ ପାଇଁ କୋଟି କୋଟି ଟଙ୍କା ଖର୍ଚ୍ଚ କରୁଛନ୍ତି । ଦେଖିବ ଏଇ ଝିଅ ଦିନେ ତମ ନାଁ ରଖିବ । ତମେ ମନ ଊଣା କରନାହିଁ ଜମା ।"

ମନ ଊଣା କରିବା ପାଇଁ ପର୍ଯ୍ୟାପ୍ତ କାରଣ ଥିଲେ ବି ସ୍ୱାମୀ ମନ ଊଣା କଲା ନାହିଁ । ଅସଲ କଥା କହିଲେ ସେ ତା'ର ମନ ଊଣା ସୁଶୀଳାକୁ ଅନୁଭବ କରିବାକୁ ଦେଲା ନାହିଁ । ଝିଅକୁ କୋଳକୁ ଉଠେଇ ନେଲା ଓ ଗେଲ କଲା ।

ଶାଶୁ, ଶ୍ୱଶୁର ଓ ନଣନ୍ଦମାନଙ୍କୁ କୌଣସି ପ୍ରକାରେ ବୁଝେଇ ପାରିଲା ନାହିଁ ସୁଶୀଳା । ଶାଶୁ ଦିନେ ଭୟଙ୍କର ପ୍ରସ୍ତାବଟିଏ ଥୋଇଲେ ସୁଶୀଳା ଆଗରେ । ମୁହଁରେ ଆନ୍ତରିକତା ଭାବ ଫୁଟେଇ କହିଲେ- ବୁଝିଲୁ ବୋହୂ ! ଝିଅ ଛୁଆଟା ! ତା' ଦାୟିତ୍ୱ ନେବା ସହଜ କଥା ନୁହେଁ, କିଏ ବାହା ହବ ତାକୁ ? ତମେମାନେ କେତେଦିନ ବଞ୍ଚିବ ତା' ଦାୟିତ୍ୱ ନେବା ପାଇଁ ? ବେଳ ଥାଉ ଥାଉ କିଛି ଗୋଟାଏ ନ କଲେ ପରେ ବହୁତ ଡେରି ହୋଇଯିବ ।

ସୁଶୀଳା ଆଶାୟୀ ହୋଇ କହିଲା, କ'ଣ କରିବା ମା ! କୁହ ! ମୋ' ଛୁଆ ପାଇଁ ମୁଁ ସବୁକିଛି କରିବା ପାଇଁ ପ୍ରସ୍ତୁତ ଅଛି ।

ଶାଶୁ ଟିକିଏ ଗଳା ଝାଡ଼ି ଫୁସ୍‌ଫୁସ୍ ହେଇ କହିଲେ । ଛୁଆଟାକୁ ନେଇ ବାଇଶି ପାହାଚରେ ଗଡ଼େଇ ଦେଇ ଏକାମୁହାଁ ହେଇ ଫେରିଆସିବୁ । ଜଗନ୍ନାଥେ ତାକୁ ସେମିତି କରି ଜନ୍ମ ଦେଇଛନ୍ତି, ତା' ଦାୟିତ୍ୱ ତାଙ୍କରି ଉପରେ ଛାଡ଼ିଦେ । ସେଇ ବୁଝିବେ ।

ଛୁଆଟାକୁ ବିଛଣାରୁ ଉଠେଇ ଜୋରରେ ଛାତିରେ ଜାବୁଡ଼ି ଧରି ଚିତ୍କାର କରି କହିଲେ ନା- ନା । ମତେ ପଛେ ଏ ଘରୁ ତଡ଼ିଦିଅ । ମୁଁ ଭିକମାଗି ମୋ ପିଲାକୁ ପୋଷିବି । ଏମିତି କଥା କୁହନାହିଁ ମା । ମୁଁ ତମ ଗୋଡ଼ ଧରୁଛି । ମତେ ଆଉ ଦିନେ ଏମିତି କଥା କହିବ ନାହିଁ ମା' ।

ଦିନଟା ସାରା ସୁଶୀଳା ଖାଇଲା ନାହିଁ କି ଛୁଆକୁ ଗୋଟାଏ ମୁହୂର୍ତ୍ତ ବି ପାଖରୁ ଛାଡ଼ିଲା ନାହିଁ । ଛାତିରେ ଜଡ଼େଇ ଧରି ଖାଲି ଆକାଶ ପାତାଳ ଭାବିବାକୁ ଲାଗିଲା । ଅନାଗତ ଆଶଙ୍କାରେ ସେ ଆତଙ୍କିତ ହୋଇ ପଡ଼ିଲା ।

ସ୍ୱାମୀ ଫେରିଲା । ତା ଛୋଟିଆ ଦୁନିଆ ବାହାରେ ତା' ପାଇଁ ଗୋଟାଏ ହିଂସ୍ର ଶ୍ୱାପଦ ସଙ୍କୁଳ ପୃଥିବୀଟାଏ ଲେଲିହାନ ଜିହ୍ୱାରେ ଅପେକ୍ଷା କରିଛି ସ୍ୱାମୀଙ୍କୁ ସେ କଥା କହିଲା, ସ୍ୱାମୀ ତାକୁ ଆଶ୍ୱାସନା ଦେଇ କହିଲା- ମୁଁ ଅଛି । ଆମ ଛୁଆକୁ ସେମିତି କିଛି ହେବା ପାଇଁ ଦେବିନାହିଁ । ଭଗବାନଙ୍କ ଉପରେ ଭରସା ରଖ ।

କିନ୍ତୁ ସତକୁ ସତ ତା ଦୁନିଆ ଯେତେବେଳେ ଓଲଟପାଲଟ ହୋଇଯାଉଥିଲା, ସେ ଥଳକୂଳ ହରାଉଥିଲା ସେତେବେଳେ କେହି ତାକୁ ଘଣ୍ଟ ଘୋଡ଼େଇ ପାରିଲେ ନାହିଁ । ନା ଭଗବାନ ନା ତା ସ୍ୱାମୀ ।

ପିଲାର ଝାଡ଼ା ପରିସ୍ରା କପଡ଼ା ସଫା କରି ନିଜେ ଗାଧୁଆ ସାରିଲା ବେଳକୁ ଦିନ ଦଶଟା । ପିଲାଟା ବଡ଼ ହେଉଛି । ତା' ପେଟ ବଢୁଛି । ନିଜେ ପେଟ ପୁରା ନ ଖାଇଲେ

କ୍ଷୀର କୋଉଠି ହେବ ? ପିଲାଟା ଝୁଣି ହେଉଛି । ସେ ରୋଷେଇ ଘରକୁ ଗଲା । ଭୋକରେ ପେଟ ଆଉଟୁପାଉଟୁ ହେଉଛି । ଠିଆ ଠିଆ ପଖାଳ ସହ ପିଆଜ ଦୁଇ ପାଖୁଡ଼ା ପାଟିରେ ଗୁଞ୍ଜିଦେଇ ସେ ପିଲା ପାଖକୁ ଧାଇଁଗଲା । ସେ ନିଶ୍ଚିନ୍ତରେ ଶୋଇଛି । ଆରେ ଏ କ'ଣ ! ତା' ପାଟିରୁ ଗଜ ଗଜ ହୋଇ ଏମିତି ଫେଣ କାହିଁକି ବାହାରିଛି ? ଗୋଟାଏ କଡ଼କୁ ମୁହଁ ମୋଡ଼ି ଦେଇଥିବା ଛୁଆକୁ ଦେଖି ସୁଶୀଳା ହତବମ୍ବ ହୋଇଗଲା । ତା' ନାକ ଚିପି ଧରିଲା । ବୁଢ଼ା ଆଙ୍ଗୁଠିରେ ପଡ଼ିଯାଇଥିବା ତା ଦୁଇ ଆଖିପତା ଉଠେଇଲା । ତା' ଛାତି ଉପରେ କାନ ଦେଇ ହୃତ୍‌ସ୍ପନ୍ଦନ ଶୁଣିବାକୁ ଚେଷ୍ଟାକଲା । କାହିଁ କୋଉଠି ଖୋଜି ପାଇଲାନି ଜୀବନୀ ସତ୍ତା । ସେ ଅସହାୟ କଣ୍ଠରେ ଚିତ୍କାର କରି ଉଠିଲା- "ମୋ ଛୁଆର କ'ଣ ହେଲା- ମୋ ଛୁଆର କ'ଣ ହେଲା ? ମୋ ଛୁଆ ! ମୋ ଛୁଆ !"

ଏକା ଝଟକାରେ କୋଠରୀ ଭିତରୁ ସେ ଅଗଣାକୁ ମାଡ଼ି ଆସିଲା, ବ୍ୟାକୁଳ ହୋଇ କହିଲା- ମାଆ ! ମାଆ ! ଦେଖ, ମୋ ଛୁଆ ଆଖି ଖୋଲୁନି । କାନ୍ଦୁନି, ନିଃଶ୍ୱାସ ନେଉନି । କେମିତି ନୀଳ ପଡ଼ିଯାଇଛି ତା' ଦେହ ।

ଧାଇଁ ଆସିଲେ ଶାଶୁ । ଛୁଆଟାକୁ ଟିକେ ଚାହିଁ ଦେଇ ବାହୁନି ଉଠି କହିଲେ- ଆଲୋ ଚଣ୍ଡାଳୁଣୀ କ'ଣ କଲୁ ଲୋ ! କ'ଣ କଲୁ ? ତାକୁ ବିଷ ଦେଇ ଦେଲୁ ? ତୁ ମାଆ ନା ରାକ୍ଷସୀ ଲୋ । ନିଜ ହାତରେ ଛୁଆଟାକୁ ମାରି ଦେଇ ନାଟକ କରୁଛୁ ଲୋ ପୋଡ଼ାମୁହିଁ ।

ଶାଶୁ ମଡ଼ା କାନ୍ଦଣା କାନ୍ଦିବା ଆରମ୍ଭ କରିଦେଲେ । ବ୍ୟସ୍ତ ବିକଳ ହୋଇ ସୁଶୀଳା କହିଲା- ମତେ ବିଶ୍ୱାସ କର ମା । ମୁଁ କିଛି କରିନି । ମୁଁ ସତ କହୁଛି । ମୁଁ କିଛି ଜାଣିନି ମା !

ଶାଶୁ କିନ୍ତୁ ତା'ର କୌଣସି କୈଫିୟତ ଶୁଣିବା ଅବସ୍ଥାରେ ନଥିଲେ । ସେ କଣ୍ଠ ତଣ୍ଟି ଫଟେଇ ଚିତ୍କାର କରୁଥିଲେ ।

ମାରିଦେଲା ଲୋ ମାରିଦେଲା ରାକ୍ଷସୀଟା ମୋ ନାତୁଣୀକୁ ମାରିଦେଲା । ବିଷ ଦେଇ ମାରିଦେଲା ମୋ ନାତୁଣୀକୁ । ମୁଁ କ'ଣ କରିବି ଲୋ ! ହେ ଭଗବାନ୍ !

ଉପାୟହୀନ ହୋଇ ପଡ଼ିଲା ସୁଶୀଳା । ତାକୁ କିଛି ବୁଦ୍ଧିବାଟ ଦିଶିଲା ନାହିଁ । ତା ଆଖିରୁ ଜୁଳୁଜୁଳିଆ ପୋକ ବାହାରିଲା ଭଳି ଲାଗିଲା । ସେ ବୁଝିପାରିଲା ଗୋଟାଏ ଭୟଙ୍କର ଚକ୍ରାନ୍ତର ଶିକାର ସେ ହୋଇଛି । ଛୁଆର ମୃତ୍ୟୁର କାରଣ ଯେ ହଳାହଳ ବିଷ ଏଥିରେ ତାର ଆଉ ସନ୍ଦେହ ରହିଲା ନାହିଁ ।

ଭଗବାନଙ୍କ ଉପରୁ ତା'ର ଭରସା ତୁଟିଗଲା । ସଂସାରରୁ ମୋହ ତୁଟିଗଲା । ଜୀବନ ପ୍ରତି ଗୋଟାଏ ଅହେତୁକ ବିତୃଷ୍ଣାଭାବ ତାକୁ ବିକଳ ବିଧ୍ୱସ୍ତ କରିଦେଲା । ମଣିଷ ପ୍ରତି ଘୃଣା ଓ ତାଚ୍ଛଲ୍ୟ ଭାବ ତା' ଚେତନାକୁ ଏମିତି ଗ୍ରାସ କରିଦେଲା ଯେ ହଠାତ୍ ସେ ଗୋଟାଏ ଅଭାବନୀୟ କାଣ୍ଡ କରିବସିଲା । କଅଁଳା ଛୁଆଟାର ଦୁଇ ଓଠ କଡ଼ ଦେଇ

ବହିଯାଇଥିବା ଫେଣ ସବୁକୁ ସେ ଜିଭ ଲଗେଇ ଚାଟିବାରେ ଲାଗିଲା । ସତେ ଅବା ସଦ୍ୟ ଜନ୍ମ କରିଥିବା ଗାଈଟି ତା ବାଛୁରୀର ଲାଳ ଜୁଡୁବୁଡୁ ଦେହକୁ ଚାଟି ଚାଟି ସଫା କରୁଛି ଅନାବିଳ ମାତୃତ୍ୱର ତାଡ଼ନାରେ ।

ଶାଶୁଙ୍କର କ୍ରନ୍ଦନ ରୋଳ ଗାଁ ଲୋକଙ୍କ କାନରେ ସମ୍ବାଦଟା ପକାଇବା ପାଇଁ ଯଥେଷ୍ଟ ଥିଲା । ଘଣ୍ଟାକ ଭିତରେ ଗାଁ ସାରା ଲୋକ ଜମିଗଲେ । ସେତେବେଳକୁ ବିଷ ପ୍ରକ୍ରିୟାରେ ସୁଶୀଳା ଝାଙ୍କି ହେବାକୁ ଆରମ୍ଭ କଲାଣି । ସେ ଆଉ କାନ୍ଦିପାରୁ ନଥିଲା କି କଥା କହିପାରୁ ନଥିଲା ।

ଦେଖଣାହାରୀଙ୍କୁ ଦେଖି ଶାଶୁ ତାଙ୍କ କାନ୍ଦଣାରେ ଆଉ ପଦେ ଯୋଡ଼ି ଦେଲେ । ସେ କାନ୍ଦଣାରୁ ଉପସ୍ଥିତ ଜନତା ବୁଝିଲେ ଛୁଆଟାର ଅନିଶ୍ଚିତ ଭବିଷ୍ୟତ ଆଶଙ୍କା କରି ତାକୁ ବିଷ ଦେଇ ନିଜେ ବିଷଖାଇ ଦେଇଛି ସୁଶୀଳା ।

ଗାଁ ଲୋକଙ୍କ ସହାୟତାରେ ମାଆ ଓ ଛୁଆକୁ ଡାକ୍ତରଖାନା ନିଆଗଲା । ଛୁଆଟାକୁ ମୃତ ଘୋଷିତ କରି ଦୁଇଦିନର ଅକ୍ଳାନ୍ତ ପରିଶ୍ରମ ପରେ ସୁଶୀଳାକୁ ମରଣ ମୁହଁରୁ ଡାକ୍ତରମାନେ ଫେରାଇ ଆଣିଥିଲେ ।

ସୁଶୀଳା ଅପରାଧୀ । ଶିଶୁ ହତ୍ୟା ଅଭିଯୋଗରେ ସେ ଅଭିଯୁକ୍ତା । ତା' ଅପରାଧ ଜଘନ୍ୟ । କେମିତି ମାଆ ? ଜନ୍ମିତ ଛୁଆକୁ ବିଷ ଦେଇଦେଲା ? ଶାଶୁ ଛାତିରେ ହାତ ବାଡ଼େଇ ମାଟି ଅଣ୍ଡାଳି ଅଣ୍ଡାଳି କାନ୍ଦୁଥିଲେ । ମହିଳା କନେଷ୍ଟବଳ ଭିଡ଼ ଆଡ଼େଇ ସୁଶୀଳାକୁ ଜିପ୍ ଭିତରକୁ ନେଲେ ଓ ଗାଡ଼ି ଧୂଳି ଉଡ଼େଇ ଆଗକୁ ଚାଲିଲା ।

ଏତେ ଶାନ୍ତ ସୁଧାର ବୁଦ୍ଧିମତୀ ବୋହୂଟା ଏମିତି କାଣ୍ଡଟାଏ କାହିଁକି କରିବସିଲା ? ଜନତାଙ୍କ ଭିତରେ ଖେଳିଯାଉଥିଲା ଏକ ବିରାଟ ପ୍ରଶ୍ନବାଚୀ ।



# ଗୋଟିଏ ଚୋରିର ଅନ୍ତରାଳେ

ଚୋରିଟା ସେତେ ବଡ଼ ଧରଣର ନଥିଲା । ପିତଳ ଢାଳଟିଏ, ଛୋଟ ଥାଳି ଦୁଇଟା, ପିତଳ ଦୀପଟିଏ, ଦୁଇଟା ରେକାବି ଓ ପିତଳର ଶିବ ଲିଙ୍ଗଟି । ଲିଙ୍ଗ ଚାରିପଟେ ତମ୍ବା ନାଗଟିଏ ଫଣା ଟେକି ଉପରକୁ ରହିଥିଲା । ଏ ଲିଙ୍ଗଟି ବୋଉ ତୀର୍ଥ କରି ଗଲାବେଳେ କାଶୀ ବିଶ୍ୱନାଥଙ୍କ ପାଖରୁ ଆଣିଥିଲା । ସେ ଭାରି ବ୍ୟସ୍ତ ହେଉଥିଲା । ତା' ଠାକୁର ସରଞ୍ଜାମତକ ଚୋରି ହୋଇଗଲା । ଇୟେ ଆଦୌ ଭଲ ଲକ୍ଷଣ ନୁହେଁ । ସିଏ ମତେ ଏ ଖବର ପୋଲିସ୍‌ରେ ଦେବାପାଇଁ ବାଧ୍ୟ କଲା । ଆଉ କିଛି ମିଳୁ କି ନ ମିଳୁ, ତା' ଶିବ ଲିଙ୍ଗ ପାଇଁ ସେ ଭାରି ଚିନ୍ତିତ ଥିଲା ।

ଅଗତ୍ୟା ବୋଉର ଚାପରେ ଓ ନୂଆ ହୋଇ ମୋ ସହରର ଥାନାକୁ ବଦଳି ହୋଇ ଆସିଥିବା ଥାନା ଇନ୍‌ଚାର୍ଜ ମୋ ସହପାଠୀ ମନୋଜ ଉପରେ ଭରସା କରି ମୁଁ ଏଫ୍‌ଆଇଆର୍‌ଟିଏ ଦେଇଦେଲି । ମନୋଜ ମୋ ଠାରୁ ସବୁ ଶୁଣି ମୋତେ ଆଶ୍ୱାସନା ଦେଲା । ଇୟେ ଏଇ ଠାଉରିଆମାନଙ୍କର କାମ । ତୁ ଅପେକ୍ଷା କର । ତୋ ଜିନିଷ ତତେ ମିଳିଯିବ ।

ଦୁଇ ଦିନ ପରେ ଫୋନ୍ କଲ୍ ପାଇ ଥାନାକୁ ଯାଇ ଯାହା ଦେଖିଲି, ସେଥିରେ ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ଚୋରି ଯାଇଥିବା ସବୁତକ ଜିନିଷ ମନୋଜ ତା ଟେବୁଲ୍ ଉପରେ ଗୋଟି ଗୋଟି କରି ସଜାଡ଼ି ରଖିଛି । ଏଗୁଡ଼ିକୁ ଦୁଇ ଜଣ ପିଲା ପିତଳ ଦୋକାନରେ ବିକୁଥିବା ବେଳେ ପୋଲିସ୍ ହାତରେ ଧରା ପଡ଼ିଥିଲେ । ପୂର୍ବରୁ ମୋ ଏଫ୍‌ଆଇଆର୍‌କୁ ଭିତ୍ତି କରି ସେ ଜିନିଷ ଜବତ୍ କରିଥିଲା ଓ ପିଲା ଦୁଇଟାକୁ ହାଜତ୍‌କୁ ପଠେଇ ଦେଇଥିଲା ।

ପିଲା ଦୁଇଜଣଙ୍କ ଭିତରୁ ଜଣେ ଆମ ଠାକୁର ଘର ଝରକା ଉପରେ ଥିବା ଅଧାହାତ ରାସ୍ତା ଉପରେ ପେଟେଇ ପଡ଼ି ଭିତରକୁ ପଶିଥିଲା । ଝରକାବାଟେ ଜିନିଷ ତକ ବାହାରକୁ ପଠେଇ ଦେଇ ପୁଣି ସେଇ ରାସ୍ତାରେ ସେ ଫେରି ଆସିଥିଲା ବୋଲି ସ୍ୱୀକାର କରିଥିଲା ।

ଏତେ କମ୍ ରାସ୍ତାରେ କେହି କେବେ ଘର ଭିତରକୁ ଆସି ପାରିବ ଓ କିଛି ଚୋରି କରି ନେବ ଏ କଥା ଶୁଣି ଆମକୁ ଆଶ୍ଚର୍ଯ୍ୟ ଲାଗୁଥିଲା । ବୋଉ ତ ଘରେ କାମ କରୁଥିବା ଠିକା ଚାକରାଣୀ ଉପରେ ସମ୍ପୂର୍ଣ୍ଣ ସନ୍ଦେହ କରୁଥିଲା । ମନୋଜର ବକ୍ତବ୍ୟ ଉପରେ ମୁଁ

ଆସ୍ଥା ପ୍ରକଟ କରିପାରୁ ନଥିଲି । ପିଲା ଦୁଇଟା ମାଡ଼ ଭୟରେ କିଛି ଗୋଟାଏ କହି ଦେଇଥିବେ । ଏ ଚୋରି ମୂଳରେ ଆଉ କିଛି ରହସ୍ୟ ଥାଇପାରେ । ହୁଏତ ବୋଉର ସନ୍ଦେହ ସତ୍ୟ ହୋଇପାରେ । ପିଲା ଦୁଇଟା ନିର୍ଦ୍ଦୋଷ ହୋଇଥାଇ ପାରନ୍ତି ।

ମୋର ସବୁ ସନ୍ଦେହକୁ ବିମୋଚନ କରି ମନୋଜ ପିଲା ଦୁଇଟାଙ୍କୁ ଆଣି ମୋ ଆଗରେ ହାଜର କରାଇବା ପାଇଁ କନେଷ୍ଟବଳଙ୍କୁ ଇଙ୍ଗିତ ଦେଲା । ଅବିଳମ୍ବେ ଆଦେଶ କାର୍ଯ୍ୟକାରୀ ହେଲା । କନେଷ୍ଟବଳ ଯେଉଁ ଦୁଇଟି ପିଲାଙ୍କୁ ଆଣି ଠିଆ କରେଇଲା, ସେମାନଙ୍କ ଭିତରୁ ଜଣେ ଅପେକ୍ଷାକୃତ ହୃଷ୍ଟପୁଷ୍ଟ ଥିବାବେଳେ ଅନ୍ୟଜଣେ ପୁଷ୍ଟିହୀନତା ଭୋଗୁଥିବା ପିଲାଟିଏ । ହାତଗୋଡ଼ କଦଳୀ ମଞ୍ଜା ପରି ନଳ ନଳ ଦିଶୁଥିଲା । ପେଟ ପିଠି ଏକାକାର ହୋଇଯାଉଥିଲା । ଆଠ ଦଶ ବର୍ଷ ବୟସ୍କ ମୁହଁ ଭଳି ଦିଶୁଥିବା ପିଲାଟା ଯେମିତି ଚାରି ପାଞ୍ଚ ବର୍ଷ ପିଲାର ଶରୀରଟା ନେଇ ବଞ୍ଚିଛି ।

ପିଲା ଦୁଇଟାଙ୍କୁ ସାମ୍ନାରେ ଦେଖି ମୋ ହୃଦ୍‌ସ୍ପନ୍ଦନ ବନ୍ଦ ହୋଇଗଲା ଭଳି ମୁଁ ଅନୁଭବ କଲି । ମୁହୂର୍ତ୍ତକ ପାଇଁ ନିର୍ବାକ୍ ନିଷ୍ପନ୍ଦ ହୋଇଗଲି ମୋ ଅଜାଣତରେ ।

ମୋର ଏ ଅସ୍ୱାଭାବିକ ଅବସ୍ଥା ମନୋଜର ଦୃଷ୍ଟି ଆକର୍ଷଣ କଲା ବୋଧହୁଏ । ସେ ବିସ୍ମୟରେ ମୋତେ କିଛି ସମୟ ନିରୀକ୍ଷଣ କଲା ଓ କହିଲା- "ତଥାପି ବି ତୋର ବିଶ୍ୱାସ ହେଉନି ? ଏଇ ବାରବୁଲାଗୁଡ଼ାକ ଏବେ ଠୁଁ ଘରେ ପଶିବା ଆରମ୍ଭ କଲେଣି । ବଡ଼ ହେଲେ ଏମାନେ କ'ଣ ନ ହେବେ! ଏମାନେ କ'ଣ ସହଜରେ ମାନୁଥିଲେ କିରେ । ଉତ୍ତମ ମଧ୍ୟମ ଦେଲା ପରେ ସବୁକଥା ଠିକେ ଠିକେ ମାନିଗଲେ ନା !"

ମୁଁ କହିଲି- "ଆରେ ଚଣ୍ଡାଳ ! ତୋ ହାତ କେମିତି ଉଠିଲାରେ ଏ ମେଞ୍ଚଡ଼ ଛୁଆ ଦି'ଟାଙ୍କ ଉପରକୁ ? ଜିନିଷ ପଛେ ନ ମିଳିଥାନ୍ତା ନାହିଁ ।"

ମନୋଜ କହିଲା- "ଏବେ ଠୁଁ ଶାସନ ନ କଲେ ଏମାନେ ତଣ୍ଡିକଟା ହୋଇଯିବେରେ ତଣ୍ଡିକଟା ।"

ମନୋଜ ଆହୁରି କ'ଣ ସବୁ କହିଯାଉଥିଲା । ମୋତେ ଲାଗୁଥିଲା, ସେ ପିଲା ଦୁଇଟାଙ୍କୁ ଧରିନାହିଁ, ସେ ଧିକ୍କାର କରୁଛି ମୋରି ଅପାରଗପଣ ଓ ଦାୟିତ୍ୱହୀନତାକୁ । ପିଲା ଦୁଇଟି ମିଟି ମିଟି ମୋ ମୁହଁକୁ ଚାହୁଁଥିଲେ । ସେଇ ନିରୀହ ଆଖିଗୁଡ଼ାକର ତେଜରେ ମୋ ପୌରୁଷର ମିଛ ଆବରଣ ଟିକକ ଯେମିତି ଜଳିପୋଡ଼ି ଛାରଖାର ହୋଇଯାଉଥିଲା । ଏ ଛୁଆମାନଙ୍କ ଆଗରେ ମୁଁ ମହାଦ୍ରୁମରୁ ବୋନ୍‌ସାଇଟିଏ ପାଲଟି ଯାଉଥିଲି । କର୍ତ୍ତବ୍ୟ ପରାୟଣତା, ସାମାଜିକ ଦାୟିତ୍ୱବୋଧତାକୁ ନେଇ ସଦା ଆସ୍ଫାଳନ କରୁଥିବା ମୋ ଅହଂଚେତନା ଉପରେ ଏ ପିଲା ଦୁଇଟି ପାଲଟି ଯାଉଥିଲେ ମୋହ ମୁଦ୍‌ଗର । ମୁଁ ଯେ ପଙ୍ଗୁ, ନିଷ୍କର୍ମା ଓ ଶକ୍ତିହୀନ ପାଲଟି ଯାଉଛି, ମୁଁ ଯେ ସାମାଜିକ ସମସ୍ୟା ଓ ସଂକଟକୁ

ଭୟ କରି ନିଜ ଚାରିପଟେ ଆଙ୍କିଥିବା ସୁରକ୍ଷାବଳୟରେ ସୌଖିନ ଜୀବନ ବଞ୍ଚୁଥିବା ସ୍ୱାର୍ଥପର ମଣିଷଟାଏ, ଏ କଥା ପିଲା ଦୁଇଟା ମୋ ଦୁଇ ଆଖିରେ ଆଙ୍ଗୁଠି ଗେଞ୍ଜି ଜଣାଇ ଦେଲେ ।

ସେମାନେ ମୋର ଅଜଣା ନଥିଲେ । ବାପା ମାଆ ସେମାନଙ୍କୁ କି ନାଁ ଦେଇଥିଲେ କେଜାଣି ? କିନ୍ତୁ ଷଣ୍ଢ ଓ କେଞ୍ଚୁଆ ବୋଲି ଡାକିଲେ ସେ ଦୁହେଁ ମନ୍ତ୍ରଶକ୍ତି ପାଇଲା ଭଳି ଚେଙ୍ଗା ହୋଇଯାଉଥିଲେ । ଲୋକେ ବି ସେମାନଙ୍କୁ ସେହି ନାଁରେ ଜାଣୁଥିଲେ । ପିଲା ଦୁଇଟାଙ୍କ ଚେହେରା ଦେଖିଲା ପରେ ଯାତ୍ରୀମାନେ କିଏ କେଞ୍ଚୁଆ, କିଏ ଷଣ୍ଢ ସେଥିପାଇଁ ବିବ୍ରତ ହୁଅନ୍ତିନି । ଏ ନାମକରଣ କରିଥିଲେ ସେମାନଙ୍କ ପୂର୍ବତନ ଅନ୍ନଦାତା ବୁଢ଼ାରାଜା ହୋଟେଲ୍‌ର ମାଲିକ । ମୋ କର୍ମକ୍ଷେତ୍ରକୁ ଯିବାପାଇଁ ପ୍ରତିଦିନ ସକାଳୁ ପଚାଶ ଷାଠିଏ କିଲୋମିଟର ରାସ୍ତା ବସ୍‌ରେ ଅତିକ୍ରମ କଲାବେଳେ ବସ୍‌ଟି ଏଇଠି ଚା'ପାନ ବିରତି ପାଇଁ ସ୍ୱଳ୍ପ ସମୟ ରହେ । ଯାତ୍ରୀମାନେ ଚା' ପାଣି କରନ୍ତି । ଅନ୍ୟ ସମୟମାନଙ୍କରେ ମାଛି ଉଡୁଥିବା ଏହି ଛୋଟିଆ ହୋଟେଲ୍‌ଟି କିଛି ସମୟ ପାଇଁ ଚଳଚଞ୍ଚଳ ହୋଇଉଠେ । ଯାତ୍ରୀମାନଙ୍କର ଆବଶ୍ୟକତା ପୂରଣ ପାଇଁ ତତ୍ପର ହୋଇଉଠେ ହୋଟେଲ୍ ମାଲିକ । ସିଙ୍ଗଡ଼ା, ପିଆଜି, ବରା, ପକୋଡ଼ି ସାଙ୍ଗକୁ କେବେ କେବେ ଇଡ୍‌ଲି ଆଉ ଦୋଷା । ଖରାଦିନେ ଭଲ ଲସି ତିଆରି କରେ ହୋଟେଲ୍ ମାଲିକ । ଯାତ୍ରୀମାନେ ଭରପୁର ମଜା ନେଉଥିବାବେଳେ ହୋଟେଲ୍ ମାଲିକର ଘାଘଡ଼ା କଣ୍ଠରୁ କାରଣ ଅକାରଣରେ ଉଚ୍ଚାରିତ ହେଉଥାଏ, "ଷଣ୍ଢ ! ଏ କେଞ୍ଚୁଆ !" ମାଲିକ କଣ୍ଠରୁ ଶବ୍ଦ ଦୁଇଟା ବାହାରୁ ନ ବାହାରୁଣୁ ଯନ୍ତ୍ରଚାଳିତ କଣ୍ଢେଇ ଭଳି ହୋଟେଲ୍‌ର ଏ ମୁଣ୍ଡରୁ ସେ ମୁଣ୍ଡକୁ ଘୂରୁଥିବା ଷଣ୍ଢ କେଞ୍ଚୁଆ ନାମଧାରୀ ପିଲା ଦୁଇଟାଙ୍କ ଗୋଡ଼ ଆହୁରି ଚଳଚଞ୍ଚଳ ହୋଇଯାଏ ତ ହାତ ଦୁଇଟି ଦି'ଗୁଣ ତେଜରେ କାମ କରେ । ସତେ ଯେମିତି ମାଲିକ ଡାକୁଛି ପଦ୍ମତୋଳା । ପିଲା ଦୁଇଟା ନାଚୁଛନ୍ତି । ଆହୁରି ଜୋର୍‌ରେ ନାଚୁଛନ୍ତି । ପୁଣି କେତେବେଳେ କୋଉ ଲୋକପ୍ରିୟ ସଙ୍ଗୀତ ଅନୁକରଣରେ ସୁସୁରୀ । ମୁହଁରେ ଫାଟି ପଡୁଛି ହସ । ପରସ୍ପର ଭିତରେ ଥଟ୍ଟାମଜ୍ଜା ତ ପୁଣି କେତେବେଳେ ଯାତ୍ରୀମାନଙ୍କ ସାଙ୍ଗରେ ଗେଲ ତାମସା । ହସି ହସି ଭାବର ଆଦାନପ୍ରଦାନ । ଯିଏ ଯେତେବେଳେ ଯାହା ଚାହିଁଲା ସଙ୍ଗେ ସଙ୍ଗେ ପହଞ୍ଚିଯାଏ ଟେବୁଲ୍ ପାଖରେ । ଆଳସ୍ୟ ନାହିଁ, ଅସନ୍ତୋଷ ନାହିଁ । ବିରକ୍ତି ନାହିଁ କି ବିବ୍ରତବୋଧ ନାହିଁ । ପିଲା ଦୁଇଟା ମନ୍ତ୍ରମୁଗ୍ଧ କରି ଦିଅନ୍ତି ଯାତ୍ରୀମାନଙ୍କୁ । ସେମାନଙ୍କ କୁନି କୁନି ପାଦ ଓ ହାତ କ୍ଳାନ୍ତ ହେବାର କେହି ଦେଖି ନାହାନ୍ତି । ସମୟ ହୋଇଯାଏ । ଡ୍ରାଇଭର ଗାଡ଼ିର ହର୍ଣ୍ଣ ଦିଏ । କଣ୍ଡକ୍ଟରର ହୁଇସିଲ୍ ଶୁଭେ । ଯାତ୍ରୀମାନେ ଗାଡ଼ି ଉପରକୁ ଉଠିଯାନ୍ତି । ହୋଟେଲ୍ ମାଲିକ ପଇସାତକ ଗଣି ରଖେ । ପିଲା ଦୁଇଟା ଟେବୁଲ୍ ସଫା କରିବାରେ ଲାଗିପଡ଼ନ୍ତି ପୁଣି ପରବର୍ତ୍ତୀ ବସ୍ ଅପେକ୍ଷାରେ ।

ପିଲା ଦୁଇଟା ବେଶ୍ ଆକର୍ଷିତ କରୁଥିଲେ ମୋତେ । ସେମାନଙ୍କ ମୁହଁର ହସ ମୋତେ ମନ୍ତ୍ରମୁଗ୍ଧ କରିଦେଉଥିଲା । ମୁଁ ଭାବାବିଷ୍ଟ ହୋଇ ପଡୁଥିଲି । ଟ୍ୟୁସନ୍, ହୋମ୍‌ୱାର୍କ, ସଂଗୀତ କ୍ଲାସ୍, ପ୍ରୋଜେକ୍ଟ ୱାର୍କ, ପରୀକ୍ଷା ପ୍ରତିଯୋଗିତା ପାଇଁ ସଦା ବ୍ୟସ୍ତ ଥିବା ମୋ ପୁଅ ଇଲୁ ମୁହଁରୁ ଏମିତି ଖୋଲା ନିର୍ମଳ ହସ ଟିକେ ଆଶା କରି ମୁଁ ନିରାଶ ହୁଏ । ଏକ ନିରାପଦ ଭବିଷ୍ୟତ ଗଢ଼ିବାର ତାଗିଦ୍ ଭିତରେ ତାକୁ ଅଣନିଃଶ୍ୱାସୀ ହୋଇଯାଉଥିବାର ଦେଖି ମୋ ଭିତରେ ଅଶେଷ ଯନ୍ତ୍ରଣା ସୃଷ୍ଟି ହେଲେ ସୁଦ୍ଧା ମୁଁ କିଛି କରିପାରେ ନାହିଁ । ସହଜେ ପିଲାଟି ଟିକେ ଗମ୍ଭୀର ପ୍ରକୃତିର । ତା' ଉପରେ ଲଦି ଦିଆଯାଇଥିବା ଦାୟିତ୍ୱ ପ୍ରତି ସେ ଏତେ ସଚେତନ ଯେ ସ୍ୱତଃସ୍ଫୂର୍ତ୍ତ ଭାବରେ ସେ ହସିପାରେ ନାହିଁ । ସକାଳୁ ମର୍ଣ୍ଣିଂୱାକ୍‌ରେ ଡାକିଲେ କହେ ମୋର ଟ୍ୟୁସନ୍ ଅଛି । ସନ୍ଧ୍ୟାବେଳେ ପାର୍କ ଆଡ଼େ ଯିବାକୁ କହିଲେ ଖିଙ୍କାରୀ ହୋଇ ତା' ମାଆ କହେ- ତମର ଯଦି ଇଚ୍ଛା ଅଛି ଯାଅ । ତାକୁ କାହିଁକି ଡାକୁଛ ? ତା'ର ସଂଗୀତ ସାର୍ ଆସିବେ ।

ଷ୍ଟଡି ରୁମ୍ ଯାଇ ତା' ସହ ଦି'ପଦ ଖୁସି ଗପ ହେଲେ ତା' ମାଆ ରୋଷେଇ ଘରୁ ଚିଲ୍ଲେଇ ଉଠେ । ତା'ର ପରୀକ୍ଷା । ସେ ପଢ଼ିବ । ତମେ ଏ ଘରକୁ ଆସ । ଗତ ପରୀକ୍ଷାରେ ଶୁଭମ୍ ତା' ଠାରୁ ତିନି ମାର୍କ ଅଧିକ ଆଣିଛି । ସେ ଖବର ରଖିଛ ନା ନାହିଁ ?

ମେଞ୍ଚଡ଼ ଟୋକାଟା ବି ଚିପିକି ଯାଏ ବହିରେ । ମାଆ ଡରରେ ଯେତିକି ନୁହେଁ, ଟ୍ୟୁସନ୍ ସାର୍‌ଙ୍କ ଗାଳି କିମ୍ବା ଭବିଷ୍ୟତ ଗଢ଼ିବା ଆଶାରେ ଯେତିକି ନୁହେଁ, କ୍ଲାସ୍‌ରେ ପଛରେ ପଡ଼ି ସାଙ୍ଗମାନଙ୍କ ଆଗରେ ହାସ୍ୟାସ୍ପଦ ହେବା ଭୟରେ ସେତିକି । ବାକି ସମୟତକ କମ୍ପ୍ୟୁଟର୍‌ରେ ଗେମ୍ ଖେଳେ । ଗପ ବହି ପଢ଼େ । ଖାଲି ମେଣ୍ଟାଲ୍ କସରତ । ଶରୀର ପାଇଁ ଆଦୌ ନୁହେଁ ।

ଇଲୁର ସଦା ଗମ୍ଭୀର ମୁହଁଟାକୁ ଦେଖିଲେ ମୋ ଶୈଶବର ଅନୁଭୂତି ସବୁ ଚେଇଁ ଉଠନ୍ତି । ଖରାବର୍ଷାକୁ ଖାତିର ନ କରି ନଇପଠା, ଆମ୍ବତୋଟା ବଣି ଚଢ଼େଇ ଧରିବା, ବାପାଙ୍କଠାରୁ ହଳୁଆ ପାଞ୍ଚଣରେ ମାଡ଼ ଖାଇବା, ସ୍କୁଲରେ ଦୁଷ୍ଟାମୀ କରି ସାର୍‌ଙ୍କ ଠାରୁ ମାଡ଼ ଖାଇବା, ଘଣ୍ଟା ଘଣ୍ଟା ଖରାରେ ଆଣ୍ଠେଇବା ଆଦି ସବୁ ମିଶ୍ରିତ ଅନୁଭବ ଯେମିତି ମୋତେ ପିଟା ମାଗୁର କରିଦେଲେ । ସଂସାରର ସବୁ ଝଡ଼ଝଞ୍ଜାର ସମ୍ମୁଖୀନ ହେବାପାଇଁ ମୋତେ ସମର୍ଥ କରିଦେଲେ ।

ପିଲା ଦୁଇଟା ମୋତେ ଯଥେଷ୍ଟ ଆନ୍ଦୋଳିତ କରନ୍ତି । ସେମାନଙ୍କର ଗୋଟିଏ ଅତୀତ ଅଛି କି ନାହିଁ ସେମାନେ ଜାଣନ୍ତି ନାହିଁ । ସେମାନଙ୍କ ଭବିଷ୍ୟତକୁ ନେଇ ଚିନ୍ତା କରିବାକୁ କେହି ନାହାନ୍ତି । ଆହା- ଅଜଣା ଅତୀତ, ଅନିଶ୍ଚିତ ଭବିଷ୍ୟତ ଓ ସର୍ତ୍ତମୂଳକ ବର୍ତ୍ତମାନକୁ ନେଇ ବଞ୍ଚୁଥିବା ବିଚାରା ପିଲା ଦୁଇଟା, ତଥାପି କେତେ ସ୍ୱଚ୍ଛନ୍ଦ ଓ ସ୍ୱାଭାବିକ ।

ମୋ କଲେଜରେ ଉତ୍ସବଟିଏ ଥିଲା । ଇଲୁର ପରୀକ୍ଷା ସରିଥିଲା । ତାକୁ ସାଙ୍ଗରେ ଧରି ମୁଁ ମୋ କର୍ମସ୍ଥଳୀ ଅଭିମୁଖେ ଯାତ୍ରା କଲି । ବସ୍‌ଟି ସେଇ ନିର୍ଦ୍ଧାରିତ ହୋଟେଲ୍‌ରେ ରହିଲା । ଅନ୍ୟ ଯାତ୍ରୀମାନଙ୍କ ସହ ଆମେ ଦୁହେଁ ବି ସେଇ ହୋଟେଲ୍‌ରେ ପଶିଲୁ ଓ ଟେବୁଲ୍‌ଟିଏ ଅକ୍ତିଆର କଲୁ ।

- "ବାପା ! ଏ ପିଲାକୁ କେତେ ବର୍ଷ ହେବ ?"

ଆମେ ବସିଥିବା ସାମନା ଟେବୁଲ୍ ଉପରୁ ଅଇଁଠା ପ୍ଲେଟ୍‌ତକ ଉଠେଇ ନେଇ ଓଦା କପଡ଼ାଟିଏ ଧରି ଟେବୁଲ୍ ପୋଛୁଥିବା ପିଲାଟା ଆଡ଼େ ଇଙ୍ଗିତ କରି ପ୍ରଶ୍ନ କଲା ଇଲୁ ।

ମୁଁ ଆମ ଦୁହିଁଙ୍କ ପାଇଁ ଦୁଇଟା ଦୋଷା ଅର୍ଡର ଦେଉ ଦେଉ ଅନ୍ୟମନସ୍କ ହୋଇ କହିଲି- "ଦଶ ଏଗାର ବର୍ଷ ହେବ ।"

ସେ ତା ସିଟ୍‌ରୁ ଉଠିପଡ଼ି ଆବେଗପ୍ରବଣ ହୋଇ ମୋ କାନରେ ଫୁସ୍‌ଫୁସ୍ କରି କହିଲା- "ବାପା ଚାଲ ଆମେ ଥାନାରେ କହିଦେବା । ଏ ହୋଟେଲ୍ ମାଲିକଙ୍କୁ ପୋଲିସ୍ ଆରେଷ୍ଟ କରିନେବ ।"

ମୁଁ ଆଶ୍ଚର୍ଯ୍ୟ ହୋଇ କହିଲି- "କାହିଁକି ? କ'ଣ ହେଲା କି ?"

ସିଏ ମତେ ଗମ୍ଭୀର ହୋଇ କହିଲା- "ତମେ ଜାଣିନ କି ? ୧୪ ବର୍ଷରୁ କମ୍ ବୟସର ପିଲାଙ୍କୁ ଏମିତି ଖଟେଇଲେ ପରା ଦଣ୍ଡ ଭୋଗିବାକୁ ପଡ଼େ ।"

ମନେ ପଡ଼ିଲା । ଗତବର୍ଷ ତା' ସ୍କୁଲରେ ଶିଶୁ ଶ୍ରମିକ ସମସ୍ୟା ସମ୍ପର୍କିତ ବକ୍ତୃତା ପ୍ରତିଯୋଗିତାରେ ଭାଗ ନେଇ ସେ ପ୍ରଥମ ପୁରସ୍କାର ପାଇଥିଲା । ବକ୍ତୃତା ପ୍ରସ୍ତୁତିରେ ମୁଁ ତାକୁ ଏ ସଂକ୍ରାନ୍ତୀୟ କିଛି ତଥ୍ୟ ଦେଇଥିଲି ।

ମୁଁ ତାକୁ କହିଲି- "ପୋଲିସ୍ ସିନା ହୋଟେଲ୍ ମାଲିକଙ୍କୁ ଆରେଷ୍ଟ କରିବ । ଏ ପିଲା ବଞ୍ଚିବେ କେମିତି ? ରହିବେ କେଉଁଠି ? ଖାଇବେ କ'ଣ ?"

କାହିଁକି ତାଙ୍କ ଘରେ ! ନିରୀହ କଣ୍ଠରେ କହିଲା ଇଲୁ । ମୁଁ ତାକୁ ଟିକେ ଆଉଁସି ଦେଇ କହିଲି, ହୁଏତ ତାଙ୍କର ଘରଟିଏ ଥାଇପାରେ, ନଥାଇ ବି ପାରେ । ବାପା ମାଆ ଥାଇପାରନ୍ତି ନ ଥାଇ ବି ପାରନ୍ତି ।"

ସେ ଗମ୍ଭୀର ହୋଇ କହିଲା- "ସରକାର ପରା ଏମାନଙ୍କ ପାଇଁ ଶିଶୁଶ୍ରମିକ ବିଦ୍ୟାଳୟ ଖୋଲିଛନ୍ତି । ସେଇଠି ରହିବେ ପାଠ ପଢ଼ିବେ । ତମେ ନେଇ ତାଙ୍କୁ ସେଇଠି ଛାଡ଼ିଦେଲେ ହେବନି ।"

ମୁଁ ତା' ମସ୍ତିଷ୍କ ଭାରାକ୍ରାନ୍ତ କରିବାକୁ ଚାହୁଁ ନଥିଲି । ତାକୁ ଆଶ୍ୱାସନା ଦେଇ କହିଲି । ଏବେ ଶିକ୍ଷାବର୍ଷ ଅଧା । କୋଉ ସ୍କୁଲ ନବ ସେମାନଙ୍କୁ ? ନୂଆ ଶିକ୍ଷାବର୍ଷ ଆରମ୍ଭ ହେଲାବେଳକୁ ମୁଁ ସେମାନଙ୍କ ବ୍ୟବସ୍ଥା କରିଦେବି ।

ଇଲୁ ଓଠରେ ହସ ଦେଖିବା ଲୋଭରେ ଛୁଆ ଦି'ଟାଙ୍କୁ ପାଖକୁ ଡାକି ସେମାନଙ୍କ ମତାମତ ନେଇଥିଲି । ସ୍କୁଲରେ ପଢ଼ିଲେ ସେମାନଙ୍କୁ ଡ୍ରେସ୍ ମିଳିବ । ଖାଇବାକୁ ମିଳିବ । ଟଙ୍କା ବି ମିଳିବ ବୋଲି କହିଥିଲି । ସେମାନେ ଆନନ୍ଦରେ ମୋ ପ୍ରସ୍ତାବ ଗ୍ରହଣ କରିଥିଲେ ।

ଇଲୁ ମୁହଁରେ ସେଦିନ ଯେଉଁ ଆତ୍ମସନ୍ତୋଷର ଭାବ ଉକୁଟି ଉଠିଥିଲା ମୋ ପିତୃ ହୃଦୟ ଏ ପର୍ଯ୍ୟନ୍ତ ତାହା ସାଇତି ରଖିଛି ।

ଦିନ ଗଡ଼ି ଚାଲିଲା । ନୂଆ ଶିକ୍ଷାବର୍ଷ ଆରମ୍ଭ ହେଲା । ଶିକ୍ଷାନୁଷ୍ଠାନମାନଙ୍କରେ ନୂଆ ଛାତ୍ରଛାତ୍ରୀମାନଙ୍କ ନାମ ଲେଖାଗଲା ।

ପିଲାମାନେ କ୍ଲାସ୍ ପରେ କ୍ଲାସ୍ ଉଠି ଚାଲିଲେ । ନୂଆ ପିଲାମାନେ ସେମାନଙ୍କ ସ୍ଥାନ ନେଲେ । ବୁଢ଼ାରାଜା ହୋଟେଲ୍ ଆଗରେ କିନ୍ତୁ ସେଇ ବସ୍‌ଟି ସେମିତି ଚିରାଚରିତ ପଦ୍ଧତିରେ ଧକେଇ ଧକେଇ ଆସି ରହୁଥିଲା । ସହଯାତ୍ରୀଙ୍କ ସହ ପୂର୍ବଭଳି ମୁଁ ସେଇ ହୋଟେଲ୍‌ରେ ଚା'ଜଳଖିଆ ଖାଉଥିଲି । ପୁଣି ମୋ ଗନ୍ତବ୍ୟ ସ୍ଥଳକୁ ଯାଉଥିଲି । ପିଲା ଦୁଇଟା ବି ସେମିତି ଚିରାଚରିତ ଢଙ୍ଗରେ ବସ୍‌ଯାତ୍ରୀଙ୍କୁ ଆପ୍ୟାୟିତ କରୁଥିଲେ ।

ଆଉ ଦିନେ ଦେଖିଲି ହୋଟେଲ୍ ମାଲିକ ମନମାରି ବସିଛି । ଛୁଆ ଦି'ଟା ହୋଟେଲ୍ ଛାଡ଼ି ଚାଲିଯାଇଛନ୍ତି । କୌତୂହଳୀ ହୋଇ ପିଲା ଦୁଇଟାଙ୍କ ସମ୍ପର୍କରେ ଜିଜ୍ଞାସା କଲି । ହୋଟେଲ୍ ମାଲିକ ମୋତେ ଯାହା କହିଲା ତାହା ଥିଲା ମୋଟାମୋଟି ଏମିତି ।

ଦଳେ ଏନ୍‌ଜିଓ କର୍ମୀ ବସ୍‌ରୁ ଓହ୍ଲେଇ ସେଇ ହୋଟେଲ୍‌ରେ ଜଳଖିଆ ଖାଇଲେ । ସେମାନଙ୍କ ସାଙ୍ଗରେ ଥିଲେ ଜଣେ ସାମ୍ବାଦିକ । ଟେବୁଲ୍ ଉପରୁ ଅଇଁଠା ଉଠାଉଥିବା ଛୁଆ ଦି'ଟାଙ୍କ ଫଟୋ ଉଠାଇଲେ ଓ ପରଦିନ ଏକ ଦୈନିକ ଖବର କାଗଜରେ ବାହାରିଲା, "ବୁଢ଼ାରାଜା ହୋଟେଲ୍‌ରେ ଶିଶୁ ଶ୍ରମିକ" । ହୋଟେଲ୍ ମାଲିକ ପାଖରେ ସନ୍ଦେଶ ପହଞ୍ଚିଲା । ଅଗତ୍ୟା ପିଲାମାନଙ୍କ ପାଉଣା ଯାହା ଥିଲା ସେତିକି ସେମାନଙ୍କ ହାତରେ ଧରେଇ ଦେଇ ଚିରଦିନ ପାଇଁ ବିଦାୟ ଦେଲା ହୋଟେଲ୍ ମାଲିକ ।

ସେଇ ପିଲା ଦୁଇଟା ଆଜି ପେଟପାଟଣା ସନ୍ଧାନରେ ଏ ସହରରେ ପହଞ୍ଚିଛନ୍ତି । କୁନି କୁନି ହାତ ଅଛି, ପେଟ ଅଛି, କିନ୍ତୁ ଖାଇବାକୁ ଭାତ ନାହିଁ ।

ବାତ୍ୟାହତ ବିହଙ୍ଗ ଭଳି ବୁଢ଼ାରାଜା ହୋଟେଲ୍‌ରୁ ଉଡ଼ିଆସି ଏବେ ପୋଲିସ୍ ହାଜତ୍‌ରେ । ମୋ ମନଟା ବିଷଣ୍ଣ ହୋଇଗଲା ।

ଉଦାସ କଣ୍ଠରେ ମନୋଜକୁ କହିଲା- "ମୋର କିଛି ଅଭିଯୋଗ ନାହିଁରେ । ପିଲା ଦୁଇଟାଙ୍କୁ ମୁକ୍ତ କରି ଦେ ।"



# ଝିଅ ବାହାଘର

ଝିଅଟା ଦୋ' ଦୋ' ଚିହ୍ନା ଲାଗୁଥିଲା, ମୁଁ ଆଉ ଟିକେ ଭଲ କରି ତା' ମୁହଁକୁ ନିରୀକ୍ଷଣ କରି ମୋ ସ୍ମୃତିଶକ୍ତିର ପରୀକ୍ଷା ନେଉଥିଲି । ଜୀବନରେ ଏମିତି ଭୁଲ୍ ମୋର ଅନେକ ଥର ହୋଇସାରିଛି । ଏକାନ୍ତ ଆପଣାର ମଣିଷମାନଙ୍କୁ ବି କିଛି ଦିନ ବ୍ୟବଧାନରେ ଦେଖିଲେ ମୁଁ ଏମିତି ଅପ୍ରସ୍ତୁତ ହୋଇପଡ଼େ । ସେମାନଙ୍କ ନାଁ, ଗାଁ, ସମ୍ପର୍କ ମନେପଡ଼େ ନାହିଁ । ସେମାନେ ଅଭିମାନ କରନ୍ତି, ମୁହଁ ଶୁଖାନ୍ତି, ବିରକ୍ତ ହୁଅନ୍ତି, କୃତ୍ରିମ କ୍ରୋଧ ବି କରନ୍ତି, ମୁଁ ସେମାନଙ୍କୁ ଭୁଲିଯାଇଛି ବୋଲି ଅଭିଯୋଗ କରନ୍ତି । ମୁଁ ବାଳସୁଲଭ ନିରୀହତାରେ ଦୁଇ ହାତ ଯୋଡ଼ି କ୍ଷମା ମାଗିନିଏ । ମୋ ନିବିଡ଼ ସମ୍ପର୍କରେ ଆସିଥିବା ଆପଣାରମାନେ ମୋର ଏ ଦୁର୍ବଳତା ସହ ଭଲ ଭାବରେ ପରିଚିତ । ବେଳେବେଳେ ଏମିତି ବି ହୁଏ, ସମ୍ପୂର୍ଣ୍ଣ ଅଚିହ୍ନା ଅଜଣା କେବେ ଦେଖି ନଥିବା ମଣିଷର ମୁହଁଟା ବି ମୋତେ ଭାରି ଚିହ୍ନାଜଣା ଲାଗେ । ଶୁଭେଚ୍ଛା ସମ୍ବୋଧନ କରି ସେମାନଙ୍କ କୁଶଳ ମଙ୍ଗଳ ପଚାରିବସେ । ଅପରିଚିତଟି ଅପ୍ରସ୍ତୁତ ହୋଇ ପଡ଼େ । ମୁହଁ ମନେ ରଖି ନ ପାରିବାର ଦୁର୍ବଳତା ମୋ ପାଇଁ ସର୍ବଦା ଏମିତି ଅପ୍ରୀତିକର ପରିସ୍ଥିତି ସୃଷ୍ଟି କରିଥାଏ । ଏଥିପାଇଁ କେହି ମୋତେ ଗର୍ବୀ, ଉଦ୍ଧତ, ଅହଂକାରୀ ଆଦି ଭୂଷଣରେ ଭୂଷିତ କଲାବେଳକୁ ଅନ୍ୟ କେହି ମୋତେ ବାଲୁରୀ, ହୁଣ୍ଡୀ ଅବା ବୋକୀ ତାଲିକାରେ ରଖି ପ୍ରସଙ୍ଗଟିକୁ ସମ୍ପୂର୍ଣ୍ଣ ବିସ୍ମୃତ ହୋଇଯାଆନ୍ତି ।

କିନ୍ତୁ ଝିଅଟାକୁ ଦେଖିଲାବେଳୁ ମୁଁ ଅନୁଭବ କରୁଥିଲି ସିଏ ମୋର ବହୁଦିନର ଚିହ୍ନା, ଏହା ମୋର ବାଲୁରୀ ଗୁଣ ନୁହେଁ, ଝିଅଟାକୁ ମୁଁ ଜାଣେ, ଖୁବ୍ ଭଲଭାବରେ ଜାଣେ । ଏମିତି ଗୋଟିଏ ଭାବନା ମୋର ଦୃଢ଼ୀଭୂତ ହେଲା ।

ହାଲ୍‌କା ରଙ୍ଗର ସାଲ୍‌ୱାର କମିଜ ପିନ୍ଧିଥିବା ପାତଳୀ ଝିଅଟା, କଳା ଟିକିଲି ମଥାରେ, ହାତରେ ପଟେ ପଟେ ସୁନା ଚୁଡ଼ି, ସରୁ ଚେନ୍‌ଟିଏ ତା'ର ଶଙ୍ଖଧବଳ ଗ୍ରୀବା ଦେଶରେ ନିରାସକ୍ତ ହୋଇ ପଡ଼ିଥିଲା । ଚେହେରାରେ ଆଭିଜାତ୍ୟର ଭାବ ଫୁଟି ଉଠୁଥିଲେ ବି ଆଖି ଦୁଇଟାରୁ ନିଗିଡ଼ି ପଡୁଥିଲା ମେଞ୍ଚା ମେଞ୍ଚା କାରୁଣ୍ୟ । ବୟସ ତ ଅଧିକ ହେଲାଭଳି ଜଣାପଡୁ ନଥିଲା ବରଂ କେଉଁ ଏକ ଅସହ୍ୟ ଦୁଃଖକୁ ମୁଣ୍ଡେଇ ହଠାତ୍ ବୟସ୍କ ହେଲାପରି

ଲାଗୁଥିଲା । ତାର ନୀଳ ହ୍ରଦ ପରି ଆଖି ଦୁଇଟାର ଉଦାସ ଚାହାଣୀ ମୋ ମନସ୍ଥଳକୁ ମନ୍ଥି ଚକଟି ପକାଇଲା ।

ସିମେଣ୍ଟ ବେଞ୍ଚରୁ ଉଠି ମୁଁ ଚାଲ ଚାଲ ହୋଇ ଆଉ ଟିକେ ଆଗକୁ ମାଡ଼ି ଚାଲିଲି, ଝିଅଟାର ଦୃଷ୍ଟି ପଥାରୁଢ଼ ହେବାପରି । ମୋ ଚପଲ ଶବ୍ଦ ସାଙ୍ଗକୁ ଚୁଡ଼ିର ରୁଣୁଝୁଣୁ ଝଙ୍କାରରେ ସେ ମୋତେ ମୁହଁ ଟେକି ଚାହିଁଲା ।

ତାର ଇଷତ୍ ଗୋଲାପୀ ଅଥଚ ନିସ୍ତରଙ୍ଗ ଓଠରେ ହଠାତ୍ କିଏ ଯେମିତି ଆଞ୍ଜୁଳାଏ ଗଙ୍ଗଶିଉଳି ଅଜାଡ଼ି ଦେଲା ।

ସେ ଉଠିପଡ଼ି ଉଚ୍ଛ୍ୱସିତ କଣ୍ଠରେ କହିଲା- ମାଉସୀ ନମସ୍କାର ।

ମୁଁ ପ୍ରତିନମସ୍କାରଟିଏ ଜଣେଇ କିଛି କହିବି କହିବି ହେଉଛି ସିଏ ସିଧା ମୋ ଦ୍ୱିଧାଭାବ ଅନ୍ତ କରି କହିଲା, ମାଉସୀ! ମୋତେ ଚିହ୍ନି ପାରିଲେନି ? ରାଉରକେଲାରେ ଆମେ ପାଖାପାଖି କ୍ୱାର୍ଟର୍‌ରେ ଥିଲେ ?

ମୁଁ ତାକୁ ମୋ ଦୁଇ ବାହୁ ଭିତରକୁ ଟେଳି ଆଣି କହିଲି- "ଆରେ ମୋ ଝିଅ ଜୁଲି ? ତୁ ଏଠି ?"

"ରିଟାୟାର୍ଡ ପରେ ବାପା ବି.ଡି.ଏ.ରେ ଘର ଖଣ୍ଡେ କିଣିଥିଲେ । ବାପା ମାଆ ଏଇଠି ରହୁଛନ୍ତି । ଏବେ ମୁଁ ଆସି ରହିଛି ତାଙ୍କ ପାଖରେ ।" ନିର୍ଲିପ୍ତ କଣ୍ଠରେ କହିଲା ଜୁଲି ।

ତା'ର ଶୂନ୍ୟ ସୀମନ୍ତ ଓ ନିରାଡମ୍ବର ଅଙ୍ଗରାଗ ମୋ ସ୍ନାୟୁ ତନ୍ତ୍ରୀଗୁଡ଼ିକୁ ସତେ ଅବା ଟାଣି ଓଟାରି ଛିଣ୍ଡେଇ ଦେଲା । ସେଇ ଯନ୍ତ୍ରଣାର ଜୁଆର ଭିତରେ ହୁଲି ଡଙ୍ଗାଟିଏ ଭଳି ଆଠ ଦଶ ବର୍ଷ ତଳର ଘଟଣା ଭାସି ଉଠିଲା ମୋ ଦୃଷ୍ଟି ପଥରେ ।

ମୋ ଚାକିରୀ କାଳର କଥା ।

ବ୍ଲଡ୍ ସୁଗାର ଟିକେ ଅଧିକ ହୋଇଯିବାରୁ ଡାକ୍ତର ମୋତେ ପ୍ରାତଃ ଭ୍ରମଣ ପାଇଁ ପରାମର୍ଶ ଦେଇଥିଲେ । ପ୍ରତିଦିନ ପ୍ରାତଃ ଭ୍ରମଣରେ ଜୁଲିର ମାଆ ସୁଚିତ୍ରା ଦେବୀଙ୍କ ସହ ମୋର ସାକ୍ଷାତ ହୁଏ । ଏଇ ଜୁଲି ଥିଲା ଆମ ସମ୍ପର୍କର ସେତୁ । ସିଏ ସେତେବେଳକୁ ଦଶମ ଶ୍ରେଣୀର ଛାତ୍ରୀ, ଭଲ ପଢୁଥିଲା । ଭଲ ଖେଳୁଥିଲା । ସ୍କୁଲରୁ ପ୍ରତିନିଧିତ୍ୱ କରି ରାଜ୍ୟସ୍ତରୀୟ ଦୁଇ ତିନିଟା ପୁରସ୍କାର ମଧ୍ୟ ହାସଲ କରିଥିଲା । ଅଭ୍ୟାସ କରିବାକୁ ପ୍ରତିଦିନ ସେ ଆସୁଥିଲା ଓ ମୋ ସହ ତା'ର ସାକ୍ଷାତ ହେଉଥିଲା । ଦିନେ ଜୁଲି ମୋତେ କହିଲା- ମାଉସୀ ଆପଣ ଏକୁଟିଆ ଆସୁଛନ୍ତି । ମୁଁ ଆପଣଙ୍କୁ ସାଙ୍ଗଟିଏ ଜୁଟେଇ ଦେବି । ତା' ପରଦିନ ସେ ତା' ମାଆ ସୁଚିତ୍ରା ଦେବୀଙ୍କୁ ସାଙ୍ଗରେ ଆଣିଥିଲା । ଆମେ ଦୁହେଁ ପ୍ରତିଦିନ କିଛି ବାଟ ଚାଲୁଥିଲୁ ଓ କିଛି ସମୟ ପାର୍କରେ ବସି ଫେରୁଥିଲୁ ।

ସେତେବେଳେ ମୋ ବଡ଼ଝିଅ ପାଇଁ ମୁଁ ଭାରି ବ୍ୟସ୍ତ ଥାଏ । ବୟସ ଅତିକ୍ରାନ୍ତ ହୋଇଯାଉଥିଲା । ଭଲ ପ୍ରସ୍ତାବଟିଏ ଯୋଗାଡ଼ ହୋଇପାରୁ ନଥିଲା । ମୋର ଓ ତା' ବାପାଙ୍କର ବ୍ୟସ୍ତତା ଦେଖି ସେ ବିରକ୍ତ ହୋଇ ରିସର୍ଚ୍ଚ କରିବାକୁ ୟୁନିଭର୍ସିଟି ଚାଲିଗଲା । ସୁଚିତ୍ରାଦେବୀ ଅନେକ ସମୟରେ ମୋ ବଡ଼ଝିଅ ପାଇଁ ଦୁଃଖ ପ୍ରକାଶ କରି କହନ୍ତି, "ତମେ ଭୁଲ୍ କଲ ଅପା ! ଝିଅମାନେ ପରା କୋଡ଼ି ପୁରିଲେ ବୁଢ଼ୀ । ସେଇ ବୟସ ଭିତରେ ବାହା ନ ଦେଲେ ବରଟିଏ ଖୋଜିବାକୁ ତମ ଶିଖ ଛିଣ୍ଡିଯିବ । କ'ଣ ମିଳିବ ସେ ପାଠରୁ ? ଝିଅ ବାହା ସାହା ହୋଇ ଘର ସଂସାର କଲେ ସେଇଥିରେ ତାଙ୍କର ଅଷ୍ଟଐଶ୍ୱର୍ଯ୍ୟ ପ୍ରାପ୍ତି ।''

ସ୍ୱରଟାକୁ ଆଉଟିକେ ନରମ କରି ମୋ ଆଡ଼କୁ ଝୁଙ୍କିପଡ଼ି ସେ କହନ୍ତି- 'ହେଇଟି ଅପା ! କୋଡ଼ିଏ ବର୍ଷର ଚେହେରାର ଆକର୍ଷଣ ଆଉ କ'ଣ ତିରିଶ ବର୍ଷ ପର୍ଯ୍ୟନ୍ତ ଥାଏ ? ଆମେ ବାପା ମାଆ ସେ କଥାକୁ ହେଜିବା ବା ନା ! ହେଲା କଲେ ପରା ଭେଳା ବୁଡ଼େ ।'

ସେ ମୋତେ ସାନ୍ତ୍ୱନା ଦିଅନ୍ତି କି ମୋ ଭୁଲ୍‌କୁ ସୁଧାରିବା ପାଇଁ ଚେଷ୍ଟା କରନ୍ତି ଅଥବା ମୋ ଅସହାୟତାକୁ ବ୍ୟଙ୍ଗ ବିଦ୍ରୂପ କରନ୍ତି ଏ କଥା ବୁଝିବାକୁ ମୁଁ କେବେ ଚେଷ୍ଟା କରିନାହିଁ । ଯାହା ଭାବନ୍ତି ନିର୍ବିକାର ଭାବରେ କହିଦିଅନ୍ତି । ପେଟରେ ତାଙ୍କର କିଛି ଥିଲାପରି ମୋତେ ଲାଗେନାହିଁ । ତାଙ୍କ କଥାକୁ ମୁଁ କେବେ ବି ପରମ ତଟକୁ ନେଇ ନଥିଲି ।

ସେଇଠି ସେଇ ରାଉରକେଲାରେ ଥିବାବେଳେ ହିଁ ମୋ ଦୁଇ ଝିଅଙ୍କର ବାହାଘର ହୋଇଗଲା । ତାହା ପୁଣି ଗୋଟିଏ ଲଗ୍ନରେ । ବଡ଼ଝିଅକୁ ସେତେବେଳକୁ ତିରିଶ ଛୁଇଁଥିଲା ଓ ସାନଝିଅର ବୟସ ଥିଲା ପଚିଶ । ଦୁଇଟି ପ୍ରସ୍ତାବ ଏକାବେଳକେ ଜୁଟିଲା, ଝିଅ ବାହାଘର ପାଇଁ ବେଳସୁଁ ତତ୍ପରତା ପ୍ରକାଶ ନ କରି ମୁଁ ଯେ ଭୁଲ୍ କରିଥିଲି ସେ ହିଁ ମୋତେ ଚେତେଇ ଦେଇଥିଲେ । ବୋଧହୁଏ ତାଙ୍କରି ଚେତାବନୀରେ ମୁଁ ସାନଝିଅ ଓ ବଡ଼ଝିଅ ଉଭୟଙ୍କର ବାହାଘର ଗୋଟିଏ ଲଗ୍ନରେ କରିବାର ନିଷ୍ପତ୍ତି ନେଇଥିଲି ସମସ୍ତଙ୍କୁ ହେଣ୍ଟିଦେଇ ।

ସେଇ ବର୍ଷ ଖରାଛୁଟିରେ ଶ୍ୱଶୁରଙ୍କ ଦେହ ଅତିଶୟ ହେବା ସମ୍ବାଦ ପାଇ ଆମେ ଦୁହେଁ ଗାଁ'କୁ ଚାଲିଆସିଲୁ । ଶ୍ୱଶୁର ଆଉ ଭଲ ହେଲେ ନାହିଁ । ଦେହାନ୍ତ ହୋଇଗଲା । ତାଙ୍କର ଅନ୍ତ୍ୟେଷ୍ଟି କ୍ରିୟା ସାରି ରାଉରକେଲା ଫେରିଲା ବେଳକୁ ମାସ ଗୋଟାଏ ବିତିଯାଇଥିଲା ।

ସନ୍ଧ୍ୟାରେ ମୋତେ ସୁଚିତ୍ରାଦେବୀ ସଙ୍ଖୋଳିବାକୁ ଆସିଲେ । ହାତରେ ଥିଲା ମିଠା ପ୍ୟାକେଟ୍ । ଫୁଟନ୍ତ କଇଁ ଫୁଲ ପରି ସେଦିନ ସେ ଅତ୍ୟନ୍ତ ଉତ୍‌ଫୁଲ୍ଲିତା ଦିଶୁଥିଲେ ।

ମିଠା ପ୍ୟାକେଟ୍ ଟିପୟ ଉପରେ ରଖି ସୋଫା ଉପରେ ବସୁ ବସୁ କହିଲେ- ଜାଣିଲ ଅପା ! ଜୁଲିର ବାହାଘର ହୋଇଗଲା ।

ଆକାଶରୁ ଖସି ପଡ଼ିଲା ପରି ମୁଁ ଅନୁଭବ କଲି, ଅବିଶ୍ୱାସ୍ୟ ଦୃଷ୍ଟିରେ ମୁଁ ତାଙ୍କ ମୁହଁକୁ ଚାହିଁ କହିଲି- କ'ଣ ଏମିତି ଛୁଆଟାକୁ ନେଇ ଥଟ୍ଟା କରୁଛ ?

ଥଟ୍ଟା ନାଇଁ ମ ଅପା ! ସତରେ ତା'ର ବାହାଘର କରିଦେଲି । ଦିନ ଆଠଟାରେ ତ ସବୁ ଠିକ୍‌ଠାକ୍ ହୋଇଗଲା । ତା ଶାଶୁ ପାଟିରୁ ତ ଲାଳ ବୋହିଲା ମୋ ଝିଅକୁ ଦେଖି । ତିନି ଭରିର ହାରଟା ତା' ବେକରୁ ଖୋଲି ମୋ ଝିଅ ବେକରେ ଗଳେଇ ଦେଇ କହିଲା, ସମୁଦୁଣୀ ! ଦିନ ଆଠଟା ମୋ ବୋହୂ ତମ ଜିମାରେ ରହିଲା ।

ସେଇ ଆଠଦିନ ଭିତରେ ତ ନିର୍ବନ୍ଧ, ବାହାଘର । ସବୁମତେ ଚେଷ୍ଟା କଲି, କିନ୍ତୁ ତମକୁ ଜଣେଇ ପାରିଲି ନାହିଁ । ତମେ ନଥିଲ ବୋଲି ଜୁଲିଟା ବି ଭାରି ମନଦୁଃଖ କରୁଥିଲା ।

ଜୁଲି ରାଜିଥିଲା ଏ ବାହାଘରରେ ?

ଜୁଲି ରାଜି ଅରାଜିରେ କ'ଣ ଅଛି ମ ଅପା ? ଆମେରିକାରେ କମ୍ପ୍ୟୁଟର ଇଞ୍ଜିନିୟର୍, ରାଜାପୁଅ ପରି ଚେହେରା, ଜଞ୍ଜାଳ ନାହିଁ । ଘରେ ଖାଲି ବୁଢ଼ୀ ମାଆଟିଏ । ଏ ପ୍ରସ୍ତାବ କ'ଣ କିଏ ହାତ ଛଡ଼ା କରେ ? ସେଥିରେ ପୁଣି ବିନା ଯୌତୁକରେ ବାହାଘର ।

ବାହା ନ ହୋଇ ପାଠ ପଢ଼ିବ ବୋଲି ଭାରି କନ୍ଦାକଟା କରୁଥିଲା । ତା' ଶାଶୁ ଆଉ ଜୋଇଁ ମିଶି ଦୁଇଦିନ କାଳ ବୁଝେଇଲେ ଅପା । ତେବେ ବି ସେ ବୋକୀଟା କ'ଣ ବୁଝୁଥିଲା କି ? ଶେଷରେ ଜୋଇଁ ତାକୁ ନେଇ ଆମେରିକାରେ ପଢ଼େଇବେ ବୋଲି ପ୍ରତିଶ୍ରୁତି ଦେବାରୁ ସେ ରାଜି ହେଲା ନା !

ମୁଁ ଆବେଗପ୍ରବଣ ହୋଇ କହିଲି । ସେ ଏବେ ଅଛି କେଉଁଠି ? ମୁଁ ଟିକେ ତାକୁ ଦେଖନ୍ତି ! ସୁଚିତ୍ରା ଦେବୀ ଖୁସିରେ ଅଧିର ହୋଇ କହିଲେ, ସେ କ'ଣ ଆଉ ଏଠି ଅଛି ? ଜୋଇଁ ତାକୁ ନେଇ ଆମେରିକା ଚାଲିଗଲେଣି ।

ଜୁଲିର ସବୁ ଖୁସି ଖବର ଶୁଣି ବି ମୋ ଭିତରେ ଆପେ ଆପେ ନିଃଶବ୍ଦରେ ଉଚ୍ଚାରିତ ହୋଇଗଲା- 'ଆହା ! ବିଚାରା ଜୁଲି !' ମାଟ୍ରିକ୍ ପରୀକ୍ଷା ଫଳ ବାହାରିଲା ! ଜୁଲି ସର୍ବାଧିକ ନମ୍ବର ରଖି ତା' ସ୍କୁଲରେ ପ୍ରଥମ ହୋଇଥିଲା !

ସୁଚିତ୍ରା ଦେବୀ ହିଁ ମୋତେ ଦେଇଥିଲେ ଏ ସମ୍ବାଦ । ସେଦିନ ବି ସେ ଏମିତି ହସି ହସି ଗଡ଼ି ଯାଉଥିଲେ । ମୋ କଣ୍ଠ କିନ୍ତୁ ରୁଦ୍ଧ ହୋଇଯାଉଥିଲା । ଯନ୍ତ୍ରଣା କାତର ଶ୍ରୋତାଟିଏ ଭଳି ମୁଁ ତାଙ୍କ ବକ୍ତବ୍ୟ ଶୁଣି ଯାଉଥିଲି ।

ଆମେରିକାରେ ଦୁଇମାସ ରହିଲା ପରେ ସେ ଫେରିଆସିଲା ଗାଁକୁ । ତା' ଶାଶୁଙ୍କର କର୍କଟ ରୋଗ ବୋଲି ରିପୋର୍ଟ ବାହାରିଲା, ଆମେରିକାରୁ ଫେରି ଜୁଲି ଶାଶୁ ସେବାରେ ବ୍ୟସ୍ତ ରହିଲା ।

ଏହା ପରେ ଆଉ ଦୁଇ ତିନିବର୍ଷ ମୁଁ ରାଉରକେଲାରେ ରହିଲି । କେବେ କେମିତି ଜୁଲି ବାପଘରକୁ ଆସିଲେ ମୋ ପାଖକୁ ଥରେଅଧେ ଆସିଛି କିନ୍ତୁ ବିବାହିତା ଝିଅଟିଏ ଯେଉଁ ଐଶ୍ୱର୍ଯ୍ୟ ମଣ୍ଡିତା ହୋଇ ବାପଘରକୁ ଆସେ ସେଥିରୁ କାଣିଚାଏ ମୁଁ ତା' ପାଖରେ ଦେଖି ନଥିଲି । ତା' ଆଖି ତଳେ ସର୍ବଦା ଏକ ଉଦାସପଣ ଛାଇ ହୋଇଥିବା ମୁଁ ଅନୁଭବ କରୁଥିଲି । ତା' ଶରୀରର ତେଜ ମଳିନ ହୋଇ ଆସୁଥିଲା, ଅସରା ଅସରା ଲୁହକୁ ଗଡ଼ିବାକୁ ନ ଦେଇ ପିଇଯିବା ପରି ତା' ମୁହଁ ଦିଶୁଥିଲା ।

ତା' ଶାଶୁଘର କଥା ପଚାରିଲେ ଛୋଟିଆ ହସଟିଏ ହସିଦେଇ ନିରାସକ୍ତ ଭାବରେ କହେ- ହଁ ସବୁ ଭଲ ।

ବାହା ହୋଇ ସୁଖୀ ହୋଇପାରି ନଥିଲା ଝିଅଟା । ମୁଁ ସେଇଠି ଥିବା ପର୍ଯ୍ୟନ୍ତ ଜୁଲି ଆଉ ଆମେରିକା ଯାଇ ନଥିଲା ।

ଚାକିରିରୁ ଅବସର ନେଇ ମୁଁ ଭୁବନେଶ୍ୱରରେ ଘର କରି ରହିଲି । ଧୀରେ ଧୀରେ ରାଉରକେଲାର ସମ୍ପର୍କ ଓ ସ୍ମୃତିରେ ଅଳନ୍ଧୁ ଜମିଲା । ଏଠି ନୂଆ ପରିବେଶ, ନୂଆ ବନ୍ଧୁବାନ୍ଧବଙ୍କ ସହ ସମ୍ପର୍କ, ମୋ ଲେଖାଲେଖି ଭିତରେ ପୁରୁଣା ସ୍ମୃତିକୁ ଉଖାରିବାକୁ ଆଉ ସମୟ ପାଇ ନଥିଲି । ଆଜି ଏତେ ଦିନ ପରେ ଜୁଲିକୁ ଦେଖି ସତକୁ ସତ ମୁଁ ଆତ୍ମହରା ହୋଇପଡ଼ିଲି ।

ଜୁଲିର ଆପାଦମସ୍ତକ ମୁଁ ଥରେ ସସ୍ନେହ ଦୃଷ୍ଟି ବୁଲେଇ ଆଣିଲି । ତା' ଶୂନ୍ୟ ସୀମନ୍ତରେ ଦୃଷ୍ଟି ନିବଦ୍ଧ ହେବାମାତ୍ରେ ମୋର ସକଳ ଖୁସି ଓ ଆବେଗ ହିମ ଶୀତଳ ପାଲଟିଗଲା । ବାକ୍‌ରୁଦ୍ଧ ହୋଇଗଲି ।

ଜୁଲି ମୋ ମନର ବେଦନା ବୁଝିଲା କି କ'ଣ ତା' ଶାଶୁ ଘର ସମ୍ପର୍କରେ କେବେ କିଛି କହୁନଥିବା ଝିଅଟା ପ୍ରଥମ କରି ମୋତେ କହିଲା-

ମୋ ବାହାଘର ଗୋଟିଏ ପ୍ରତାରଣା ଥିଲା ମାଉସୀ । କ୍ୟାନ୍‌ସର୍ ରୋଗ ଭୋଗୁଥିବା ମାଆ ଚାପରେ ସେ ମୋତେ ବିବାହ କରିଥିଲେ । ମାଆଙ୍କ ପାଇଁ ବିଶ୍ୱସ୍ତ ସେବିକାଟିଏ ତାଙ୍କର ଆବଶ୍ୟକ ଥିଲା । ଲୋକଙ୍କ ସନ୍ଦେହକୁ ଏଡ଼ିବାକୁ ମୋତେ ଦୁଇମାସ ପାଇଁ ସେ ଆମେରିକା ନେଇଯାଇଥିଲେ । ପୂର୍ବରୁ ସେ ମାର୍କିନ୍ ଝିଅଟିଏ ବିବାହ ହୋଇ ଘର ସଂସାର କରିଥିଲେ । ସେଇଠି ମୁଁ ତା'ର କିଛି ଆଭାସ ପାଇଥିଲି । ଶାଶୁଙ୍କ ଦେହାନ୍ତ ପରେ ସେ ପନ୍ଦର ଦିନ ପାଇଁ ଆସିଥିଲେ । ସେଇ ସେତିକି । ତା'ପରେ ସେ ସବୁ ସମ୍ପର୍କ ତୁଟେଇ ଚାଲିଗଲେ । ଏଠୁ ଚାଲିଗଲା ପରେ ସେ ତାଙ୍କର ଠିକଣା ଓ ଫୋନ୍ ନମ୍ବର ବଦଳେଇ ଦେଲେ । ଏମିତି କି ଏ ଝିଅର ଜନ୍ମ ଖବର ବି ମୁଁ ତାଙ୍କୁ ଜଣେଇ ପାରିଲି ନାହିଁ ।

ଟିକିଏ ରହି ପୁଣି ସେ କହି ଚାଲିଲା- ହଠାତ୍ ଦିନେ ରାସ୍ତା ଦୁର୍ଘଟଣାରେ ତାଙ୍କର ମୃତ୍ୟୁ ସମ୍ବାଦ ଥିବା ଟେଲିଗ୍ରାମ୍‌ଟିଏ ବାପାଙ୍କ ପାଖକୁ ଆସିଲା ।

ଗୋଟାଏ ଯନ୍ତ୍ରଣା ଜର୍ଜ୍ଜରିତ ପ୍ରତୀକ୍ଷାର ଅନ୍ତ ହୋଇଗଲା ଭାବି ଆଶ୍ୱସ୍ତ ହେଲି। ମଥାରୁ ସିନ୍ଦୁର ପୋଛିଲି, ହାତରୁ ଚୁଡ଼ି କାଢ଼ିଲି।

ଓଃ! ମୁଁ ଅସ୍ଫୁଟ ଆର୍ତ୍ତନାଦ କରି ଉଠିଲି।

ସିଏ ସେମିତି ନିର୍ଲିପ୍ତ କଣ୍ଠରେ କହିଲା- ଇୟେ ବି ପ୍ରତାରଣାର ଆଉ ଏକ ରୂପରେଖ ଥିଲା ମାଉସୀ।

ତୁ କ'ଣ କହୁଛୁ? ମୁଁ ଆଶ୍ଚର୍ଯ୍ୟ ହେଇ କହିଲି।

ମାଉସୀ! ଆମେରିକାରୁ ଫେରିଥିବା ତାଙ୍କର ଜଣେ ସାଙ୍ଗଙ୍କ ସହ ଦେଖା ହୋଇଥିଲା। ସେ କହୁଥିଲେ ଆମେରିକାର ସିଟିଜେନ୍‌ସିପ୍ ନେଇ ସେ ସେଇଠି ରହୁଛନ୍ତି।

ତା'ର ଉଦ୍‌ଗତ କୋହକୁ ରୋକିବା ପାଇଁ ସେ ତଳ ଓଠଟାକୁ ଦୁଇ ଦାନ୍ତ ସନ୍ଧିରେ ଚାପି ଧରିଲା। ତା'ର ପଦ୍ମପାଖୁଡ଼ା ପରି ଦୁଇ ଆଖିରେ ଦୁଇଟୋପା ଲୁହ ବିନ୍ଦୁ କିନ୍ତୁ ଢଳ ଢଳ ହେବାର ସ୍ପଷ୍ଟ ବାରି ହୋଇ ପଡୁଥିଲା।

ତାକୁ ସାନ୍ତ୍ୱନା ଦେବାପାଇଁ ମୋ ପାଖରେ ଭାଷା ନଥିଲା। ମୁଁ ଜାଣିଥିଲି ମୋ ମୁହଁର ପଦେ ଆଶ୍ୱାସନା ତା'ର ଧୈର୍ଯ୍ୟର ବାଲିବନ୍ଧ ଭାଙ୍ଗି ଚୂରମାର କରିଦେବ ଓ ସେ ଜଳନ୍ତା ମହମବତୀଟିଏ ଭଳି ବିଗଳିତ ହୋଇ ପଡ଼ିବ। ତା'ର ସେ ଦଗ୍ଧିଭୂତ ଅବସ୍ଥା ମୁଁ ଦେଖିବାକୁ ଚାହୁଁ ନଥିଲି ଆଦୌ।

ପଶ୍ଚିମ ଆକାଶରେ ସୂର୍ଯ୍ୟ କେତେବେଳୁ ଢଳି ପଡ଼ିଲେଣି। ଷ୍ଟ୍ରିଟ୍ ଲାଇଟ୍ ସବୁ ଗୋଟିକ ପରେ ଗୋଟିଏ ଜଳି ଉଠିଲା। ପାର୍କର ଗହଳି ନରମି ଆସୁଥିଲା। ମୁଁ ବିଷଣ୍ଣ କଣ୍ଠରେ କହିଲି-

ଜୁଲି! ଅନ୍ଧାର ହେଲାଣି। ଚାଲ୍ ଘରକୁ ଯିବା।



# ବିଧର୍ମୀ

ପାଷ୍ଟୁରେଡୀ ଦିଦି ନିରୁଦ୍ଦିଷ୍ଟ ।

ଦୁଇଦିନ ଛୁଟିରେ ଯାଇଥିଲା ଯେ ଦୁଇମାସ ଛୁଇଁଲାଣି ।

ଡାକ୍ତରଖାନାରୁ ଦୁଇଦୁଇଟା ରେଜିଷ୍ଟ୍ରି ଚିଠି ତା’ ଗାଁ ଠିକଣାରୁ ଫେରି ଆସିଲାଣି । ରୋଗୀଗୁଡ଼ାକ ଡାକ୍ତରଖାନାରେ ହନ୍ତସନ୍ତ ହେଉଛନ୍ତି । ସିଏ ଚିକିତ୍ସା କରୁଥିବା କେତେଜଣ ଗର୍ଭବତୀ ସ୍ତ୍ରୀ ସନ୍ତାନ ପ୍ରସବ କରିସାରିଲେଣି । ଆଉ କେତେଜଣ ତା’ଫେରିବା ବାଟକୁ ଚାହିଁ ରହିଛନ୍ତି । ପାଷ୍ଟୁରେଡୀ ଦିଦିର ହାତ ଭଲ । ସିଏ ପାଖରେ ଥିଲେ ପ୍ରସୂତୀକୁ ବାଧା ହୁଏ ନାହିଁ, ସୁରୁଖୁରୁରେ ପିଲା ଜନ୍ମ ହୋଇଯାଏ । ତା’ର କଅଁଳ କଥା, ମୋଲାୟମ୍ ବ୍ୟବହାର ଗର୍ଭିଣୀ ସ୍ତ୍ରୀର ମନଅଗଣାରେ ଚାଙ୍ଗୁଡ଼ା ଚାଙ୍ଗୁଡ଼ା ଭରସାର ଗଙ୍ଗଶିଉଳି ଭରିଦିଏ । ପ୍ରସବ ବେଦନାକୁ ସେ ଆଉ ଜୀବନ ମରଣ ସମସ୍ୟା ବୋଲି ଭାବେ ନାହିଁ । ଗୋଟାଏ କି ଦୁଇଟା ଛୁଆ ଜନ୍ମ ପରେ କେତେ ରଙ୍ଗରେ କେତେ ଢଙ୍ଗରେ ବୁଝେଇ ସୁଝେଇ ପରିବାର ନିୟନ୍ତ୍ରଣ କାମଟା ବି ସାରିଦିଏ । ଶାଶୁକୁ ବୁଝାଏ ଗୋଟାଏ ବାଗରେ ତ ବୋହୂକୁ ବୁଝାଏ ଆଉ ଗୋଟାଏ ଢଙ୍ଗରେ । ସମସ୍ତଙ୍କ ପେଟ ପୂରିଯାଏ, ମନ ଭରିଯାଏ, ତା କାମ ହୋଇଯାଏ । ସଦ୍ୟ ଜନ୍ମ ହୋଇଥିବା ଛୁଆକୁ ମା’ କେମିତି କ୍ଷୀର ଦବ, ପୋଲିଓ ଦବ, ପ୍ରତିଷେଧକ ଟୀକାର ବ୍ୟବସ୍ଥା ସବୁ ଚିନ୍ତା ସିଏ ନିଜ ମୁଣ୍ଡକୁ ନେଇଯାଏ । ନିଜେ ସିନା ବାଡୁଆ, ଛୁଆପିଲା ଜନ୍ମ କରିନି, କିନ୍ତୁ ସାତ ପିଲାର ମାଆ ଭଳି ସିଏ ପ୍ରସୂତୀକୁ ଆକଟ କରୁଥାଏ ତ ଷଠୀ ବୁଢ଼ୀ ଭଳି ଶିଶୁମାନଙ୍କର ଯତ୍ନ ନେଉଥାଏ । ବିପଦ ଆପଦରେ ସେ ଠିଆ ହୁଏ । ତାକୁ ଖୋଜିବା ଆଗରୁ ସିଏ ଆସି ପହଞ୍ଚି ଯାଇଥାଏ ।

ପଦମ୍‌ପୁରର ଗୋଷ୍ଠୀ ସ୍ୱାସ୍ଥ୍ୟକେନ୍ଦ୍ରର ଏଏନ୍‌ଏମ୍ ପାଷ୍ଟୁରେଡୀ, ପ୍ରେମଶୀଳା ପାଷ୍ଟୁରେଡୀ । ତା’ର ଅସଲ ନାଁ ବହୁତ କମ୍ ଲୋକଙ୍କୁ ଗୋଚର । ସମସ୍ତଙ୍କର ସିଏ ପାଷ୍ଟୁରେଡୀ ଦିଦି । ଲୋକେ ତାକୁ ସେଇ ନାଁରେ ଡାକନ୍ତି । ଦୁଇ ମାସ ହେଲା ସେ ନିଖୋଜ । କୁଆଡ଼େ ଗଲା ପାଷ୍ଟୁରେଡୀ ଦିଦି ? ତାକୁ କ’ଣ ଧରତୀ ମା’ ଖାଇଦେଲା ? ପବନ ଦେବତା ଉଡ଼େଇ ନେଲା ? ଆକାଶ ଉଠେଇ ନେଲା ? ନା ଜଙ୍ଗଲ ମିଶେଇ ଦେଲା ନିଜ ଦେହରେ ?

କଳା ମୁଚୁମୁଚୁ ପ୍ରେମଶୀଳା ପାଷ୍ଟୁରେଡୀର ଫୁଲକା ଫୁଲ୍‌କା ଦେହ । ଲମ୍ବା ଚଉଡ଼ା ଶରୀର । ଗାଲ ଦୁଇଟା ପାଉଁରୁଟି ପରି, ମୁଣ୍ଡରେ ଗୋଛାଏ କୁଞ୍ଚୁକୁଞ୍ଚୁଆ କେଶ, ଉପରକୁ ଟେକା ଟେକି କରି ଖୋସାଟିଏ ଥୋଇଦେଇଥାଏ । ଲମ୍ବ ଲମ୍ବ ନିଟୋଳ ବାହୁ ଦୁଇଟା ପାପୁଲି ପର୍ଯ୍ୟନ୍ତ ଖାଲି । ପାଣି ଚୁଡ଼ିଟିଏ ବି ନଥାଏ କି ମଥାରେ ନଥାଏ ଟିକିଲିଟିଏ । ଖାଲି ରୂପା ଚେନ୍‌ଟିରେ ଷ୍ଟିଲ୍‌ର କ୍ରଶ୍‌ଟିଏ ଲମ୍ବିଥାଏ ଛାତିରେ । ବାସ୍ ସେତିକି । ସେତିକିରେ ତା' ଚେହେରାରେ ଗୋଟାଏ ଚମକ୍ ଫୁଟି ଉଠେ । ଲେଡି ସାଇକେଲ୍‌ଟିଏ ଧରି ସେ ବୁଲୁଥାଏ ଗାଁରୁ ଗାଁ । ପବନ ପରିକା ଘରକୁ ଘର ବୁଲୁଥିବା, ଗୁରୁତର ରୋଗୀ ଦେଖିଲେ ଭୋକ ଶୋଷ ଭୁଲୁଥିବା ପାଷ୍ଟୁରେଡୀ ଦିଦିର କୋଉ ଗୁଡ଼ଘର ପିମ୍ପୁଡ଼ି ଖାଇଗଲା ଯେ ସେ ଗଲା ଯେ ଗଲା ଆଉ ବାହୁଡ଼ି ନଇଲା ?

ଚାକିରିରେ ଯୋଗ ଦେବା ଦିନଠାରୁ ପାଷ୍ଟୁରେଡୀ ଦିଦି ଦିନଟିଏ ବି ଛୁଟି ନେଇ ନଥିଲା । ଏବେ ତା'ର କି ଦରକାର ପଡ଼ିଲା ଯେ ଏତେ ଦିନ ହେଲାଣି ସେ ଫେରିବା ନା ଧରୁନି ?

ପାଷ୍ଟୁରେଡୀ ଦିଦି ଏଠି ଥିଲାବେଳେ ତା'ର ବିତି ଯାଇଥିବା ଦିନକଥା କେହି ମୁଣ୍ଡ ଖେଳାଉ ନ ଥିଲେ । ବର୍ତ୍ତମାନର ଚଳଚଞ୍ଚଳତାରେ ଏ ଅଞ୍ଚଳର ଲୋକଙ୍କୁ ସେ ଏମିତି ମୋହାବିଷ୍ଟ କରିଦେଇଥିଲା ଯେ ତା'ର ମଧ୍ୟ ଗୋଟିଏ ଅତୀତ ଥାଇପାରେ, ଗୋଟାଏ ରଙ୍ଗୀନ୍ ସ୍ୱପ୍ନମୟ ଭବିଷ୍ୟତ ବି ଥାଇପାରେ, ତା'ର କିଛି ବ୍ୟକ୍ତିଗତ ସମସ୍ୟା ଥାଇପାରେ ଅଥବା ପ୍ରେମପ୍ରଣୟ ଅନୁରାଗବିରାଗ ଭଳି କିଛି ଭାବାବେଗ ଥାଇପାରେ ସେ କଥା ଯେମିତି କାହାରି ମନକୁ ଆସୁ ନଥିଲା, ସିଏ ବି ତା ବ୍ୟକ୍ତିଗତ ଜୀବନର କିଛି କଥା ଉବୁଡ଼ା ପଡ଼ି କାହାକୁ କହିବାର କେହି କେବେ ଶୁଣି ନାହାନ୍ତି । ଏବେ ସିଏ ନିଖୋଜ ହେବାର ଦୁଇମାସ ନ ପୂରୁଣୁ ତା' ଅତୀତ ବର୍ତ୍ତମାନ ଓ ଭବିଷ୍ୟତକୁ ନେଇ ଏତେ ଚର୍ଚ୍ଚା ହେଉଛି ଯେ ତାକୁ ଆଧାର କରି ଆଠ ଦଶଟା ଉପନ୍ୟାସ ହୋଇଯିବ ।

କେବେ ଯଦି ପାଷ୍ଟୁରେଡୀ ଦିଦି ଫେରିଆସନ୍ତା ସେ ନିଶ୍ଚୟ ଆଶ୍ଚର୍ଯ୍ୟ ହୁଅନ୍ତା ଯେ ସେ ତୁଣ୍ଡ ନ ଖୋଲିଲେ ବି ତା' ସମ୍ପର୍କିତ ଏତେଗୁଡ଼ାଏ ରୋଚକ ଖବର ଲୋକମାନେ ରଖିଛନ୍ତି । କିନ୍ତୁ ସେ ନିଶ୍ଚୟ ଅବସୋସ କରନ୍ତା ଯେ ତା'ର ଏତେଗୁଡ଼ାଏ ଘଟଣାବହୁଳ ଅତୀତ ଅଛି ଅଥଚ ସିଏ ତା' ସହ ପରିଚିତ ହୋଇନଥିଲା ଏ ପର୍ଯ୍ୟନ୍ତ । ସେ ପଦମ୍ ପୁରିଆଙ୍କଠାରୁ ମନଭରି ତା' ଇତିହାସ ଶୁଣନ୍ତା ଆଉ ଉପଭୋଗ ବି କରନ୍ତା ।

ଲୋକେ କହୁଥିଲେ, ପାଷ୍ଟୁରେଡ୍ଡୀ କୁଆଡ଼େ ଶାନ୍ତିଶୀଳର ପ୍ରେମିକା । ସିଏ ଏମିତି ଗାଁ ଗାଁ ବୁଲି ସବୁ ଗୁମର ଶାନ୍ତିଶୀଳକୁ ଦେଉଥିଲା ଓ ସେମାନେ ଆସି ରାତିରେ ଲୁଟ ତରାଜ୍ କରୁଥିଲେ । ଧନୀ ସାଉକାରଙ୍କଠାରୁ ଲୁଚା ଚୋରାରେ ବଟି ଆଦାୟ କରି ସିଏ ଶାନ୍ତିଶୀଳ ପାଖକୁ ପଠଉଥିଲା । ମହୁଲ ବେପାରୀ ଆପ୍ପାରାଓ ଗାଡ଼ି ଉପରକୁ ବୋମା

ପକାଇ ତା'ଠୁଁ ଟଙ୍କା ଛଡ଼ାଇ ନେବାରେ ପ୍ରେମଶୀଳାର ହାତ ଥିଲା ସବୁଠୁଁ ବେଶୀ, ସେହି ଘଟଣାକୁ ମାଓବାଦୀଙ୍କ କାର୍ଯ୍ୟକଳାପ ବୋଲି ଶାନ୍ତିଶୀଳ ପ୍ରଚାର କରିବାରୁ ମାଓବାଦୀମାନେ ଉଠେଇ ନେଇଛନ୍ତି ପାଷ୍ଟୁରେଡୀକୁ ।

କେହି କେହି ପ୍ରତ୍ୟକ୍ଷଦର୍ଶୀ କହୁଥିଲେ- ପାଷ୍ଟୁରେଡୀ ନିଖୋଜ ହେବାର ଦୁଇ ଚାରିଦିନ ଆଗରୁ ଗୋଟାଏ ନିଶୁଆ ଲୋକ, ଯିଏ ପୋଲିସ୍‌ରେ କାମ କଲାଭଳି ଲାଗୁଥିଲା, ସିଏ ଆସିଥିଲା, ସିଏ ପ୍ରେମଶୀଳାକୁ ବାହାହେବାପାଇଁ ଚାହୁଁଥିଲା, ସେଇ ଲୋକଟାର ପିଲାଛୁଆ ସଂସାର ଅଛି ବୋଲି ଜାଣିବା ପରେ ମନ ବିଷ୍ଣାପରେ ସେ ଏଠିକୁ ଚାଲି ଆସିଥିଲା । ସେଇ ଲୋକଟା ପାଷ୍ଟୁରେଡୀକୁ ଉଠେଇ ନେଇଛି ।

ଆହୁରିବି ଶୁଣିବାକୁ ମିଳୁଥିଲା, ପ୍ରେମଶୀଳାର ଭଲ ଡେଲିଭରି ହାତ ଥିବାରୁ ଗୋଟାଏ ମହିଳା ମାଓବାଦୀର ପିଲା ଜନମ କରେଇବା ପାଇଁ ତା' ସ୍ୱାମୀ ତାକୁ ଉଠେଇ ନେଇଛି । ବଣ ଜଙ୍ଗଲରେ ସେମାନେ ଡାକ୍ତର, ଔଷଧ ପତ୍ର କୋଉଠୁ ପାଇବେ ? ନ ହେଲେ ପାଷ୍ଟୁରେଡୀ ଦିଦି କ'ଣ ଫେରି ଆସନ୍ତା ନାହିଁ ?

ଏ ସବୁ ଡାହା ମିଛ । ପାଷ୍ଟୁରେଡୀ ଯୁଆଡ଼େ ଯାଇଛି ନିଜ ଇଚ୍ଛାରେ ଯାଇଛି ବୋଲି କହୁଥିଲା ପାଷ୍ଟୁରେଡୀକୁ ଅଧିକ ଜାଣିଛି ବୋଲି ଦାବି କରୁଥିବା କାର୍ତ୍ତିକା, ଯିଏ ତିନି ତିନିଥର ପ୍ଲସ୍‌ଟୁ ଫେଲ୍ ହେବା ପରେ ଏବେ ଗାଁରେ ବୁଲୁଛି ଓ ଗାଁ ଝିଅବୋହୂଙ୍କର ସବୁଖବର ତା' ନଖ ଦର୍ପଣରେ ରଖିଥିବାର ବାହାସ୍ଫୋଟ ମାରୁଛି । ଅସଲ କଥା ହେଲା ପାଷ୍ଟୁରେଡୀ ପାଠ ପଢ଼ିଲା ଦିନୁ ଗୋଟାଏ ପିଲାକୁ ଭଲ ପାଉଥିଲା, ଯାହାର ଧର୍ମ ପାଷ୍ଟୁରେଡୀର ଧର୍ମଠାରୁ ଅଲଗା । ଦୁହିଁଙ୍କ ପରିବାର ବାହାଘର ପାଇଁ ରାଜି ହେଉ ନଥିଲେ । ଦୁହିଁଙ୍କ ଧର୍ମର ପୁରୋହିତ ବି ଏ ବାହାଘର କରେଇ ନ ଦେବାକୁ ଅଡି ବସିବାରୁ ସେ ଦୁହେଁ କୋର୍ଟରେ ବାହାହେଇ କୁଆଡ଼େ ଚାଲିଯାଇଛନ୍ତି ।

ପଦମ୍‌ପୁରରେ ଏମିତି ନିତି ନୂଆନୂଆ କଥା ଶୁଣିବାକୁ ମିଳୁଥିବାବେଳେ ପ୍ରେମଶୀଳା ପାଷ୍ଟୁରେଡୀ ମୃତ୍ୟୁ ସହ ସଂଗ୍ରାମ କରୁଥିଲା ନର୍ସିଂହୋମ୍‌ରେ । ତାକୁ ଏଠି ଭର୍ତ୍ତି କରିଥିବା ଯୁବକଟି ନିଜ ଦେହରୁ ଦୁଇବୋତଲ ରକ୍ତ ଦେଇଥିଲେ ବି ତା'ର ଏ ଅବସ୍ଥା ଏ ପର୍ଯ୍ୟନ୍ତ ସ୍ୱାଭାବିକ ହୋଇପାରି ନାହିଁ । ସେ ଶେଯରୁ ଉଠି ପାରୁନଥିଲା । ତୁଣ୍ଡ ଲେଉଟେଇ କିଛି କହିପାରୁ ନଥିଲା, ଆଖି ଖୋଲିଲା ମାତ୍ରେ ତା' ଆଖି ଆଗରେ ନାଚିଯାଉଥିଲା ସେଇ ଲୋମହର୍ଷକ ଚିତ୍ର । ହିଂସ୍ର ମଣିଷଙ୍କ ଅଶ୍ଳୀଳ ତାଣ୍ଡବ । ଅଶାନ୍ତ ସମୁଦ୍ର ଲହଡ଼ି ପରି ହାତରେ ନିଆଁହୁଳା ଧରି ମାଡ଼ିଆସୁଛନ୍ତି ଶହ ଶହ ଲୋକ । ସେଇ ନିଆଁହୁଳା ଯେମିତି ଜିଭ ଲହ ଲହ କରି ତାକୁ ଗ୍ରାସ କରିବାକୁ ଆଗେଇ ଆସୁଛି । ସେଥିରୁ ମୁକ୍ତି ପାଇବା ପାଇଁ ତ୍ରସ୍ତ ହରିଣୀ ଭଳି ସେ ଧାଉଁଛି ପ୍ରାଣମୂର୍ଚ୍ଛା । ଖାଲଢ଼ିପ, ବାଟଅବାଟ, କଣ୍ଟାଝଟା କିଛି ମାନୁନାହିଁ । ବେଶ ବାସ ଅସ୍ତବ୍ୟସ୍ତ । ଭୂଇଁରେ ଲୋଟୁଥିବା ତା' ସଫେଦ କାନିଟା ଗୋଟାଏ ଦୁର୍ଦ୍ଦାନ୍ତ

ହାତରେ ପଡ଼ିଯାଉଛି, ନିଜକୁ ବଞ୍ଚେଇବାକୁ ଯାଇ ସେ ଚକ୍ରପରି ଦୁଇ ଚାରିଥର ଘୁରି ଶାଢ଼ୀର ବନ୍ଧନରୁ ନିଜକୁ ମୁକ୍ତ କରୁଛି ଓ ପୁଣି ଧାଉଁଛି । ସହରର ଏ ଗଳିରୁ ସେ ଗଳି । ଗୋଟାଏ କେବିନ୍ ପଛପଟେ ଆତ୍ମଗୋପନ କରିଗଲା ମୁହୂର୍ତ୍ତକ ପାଇଁ । ଆକ୍ରମଣକାରୀମାନେ ନିରାଶ ହେଲେ । ବାଟଭାଙ୍ଗି ଅନ୍ୟ ଆଡ଼େ ମାଡ଼ିଗଲେ । କିଛି ସମୟ ପରେ ସ୍ୱସ୍ତିର ନିଃଶ୍ୱାସଟିଏ ନେଲା ସେ । ଅଦୂରରୁ ପୋଲିସ୍ ଭ୍ୟାନ୍‌ର ସାଇରନ୍ ଶୁଭୁଥିଲା । ସେ ପଛକୁ ଫେରି ଚାହିଁଲା । ଚର୍ଚ୍ଚରେ ଲାଗିଥିବା ନିଆଁର ଧାସ ଓ ଧୂଆଁ ଏବେ ବି ଆକାଶକୁ ଧୂସର କରି ରଖିଛି । ପଛକୁ ଫେରିବା ନିରାପଦ ନୁହେଁ । ସେ ପୁଣି ଧାଇଁଲା ଆଗକୁ । ଏତେ ବଡ଼ ସହର । ଚାରିଆଡ଼େ ଦଙ୍ଗାର ପ୍ରଭାବ । ଜନତା ଥରହର । ଅନ୍ଧାର ହୋଇ ଆସିଲାଣି । ତାକୁ କିଛି ବୁଦ୍ଧିବାଟ ଦିଶିଲାନି । ତା'ର ଜଣେ ଦୂରସମ୍ପର୍କୀୟ ମାମୁପୁଅ ରହୁଥିଲା ଏଇ ସହରରେ । ଏଇ ଚର୍ଚ୍ଚରେ ତା' ସହ ପରିଚୟ । ତିନି ଚାରି ଜଣ ମେସ୍ କରି ରହନ୍ତି । ଖ୍ରୀଷ୍ଟିଆନ୍ ସାହି । ସେହି ସ୍ଥାନକୁ ନିରାପଦ ମନେକରି ଗୋଟାଏ ଅନ୍ଧାରୁଆ ଗଳି ଦେଇ ସେ ସେଇଠି ପହଞ୍ଚିଲା । ଚାରିଆଡ଼େ ଅନ୍ଧାର ମାଡ଼ିଆସିଲାଣି । ପିଣ୍ଡା ଉପରକୁ ଉଠି ଅଥୟ ହୋଇ ସେ କବାଟ ପିଟିବାରେ ଲାଗିଲା ତ କଲିଂବେଲ୍ ସୁଇଚ୍‌ଟା ଟପ୍ ଟପ୍ କରିବାରେ ଲାଗିଲା । କିଛି ସମୟ ପରେ କବାଟ ଖୋଲିଲା, ପ୍ରେମଶୀଳାର ଭୟାର୍ତ୍ତ ମୁଖମଣ୍ଡଳର ଭାଷା ପଢ଼ିବା ଆଗରୁ ଲୋକଟାର ତା' ବିବସ୍ତ୍ର ଶରୀର ଉପରେ ଦୃଷ୍ଟି ନିବଦ୍ଧ ହେଲା । ସେ କିଛି କହିବା ପୂର୍ବରୁ ଲୋକଟା ଗୋଟିଏ ହାତରେ ପ୍ରେମଶୀଳାର ବାହୁ ଧରି ଭିତରକୁ ଟାଣି ଆଣିଲା ଓ ଅନ୍ୟ ହାତରେ କବାଟଟା ବନ୍ଦ କରିଆଣିଲା । ଆଶ୍ୱସ୍ତ ହେଲା ପ୍ରେମଶୀଳା ମୁହୂର୍ତ୍ତକ ପାଇଁ । ଅଥଳ ସମୁଦ୍ର ଭିତରକୁ ଥଳକୂଳଟିଏ ପାଇଲା ଅବା । କିନ୍ତୁ ତା'ର ମୋହ ଭଙ୍ଗ ହେବା ପାଇଁ ନିମିଷଟିଏ ବି ଲାଗିଲା ନାହିଁ । ଭିତରେ ତିନି ଚାରିଟା ମଣିଷଖିଆ ବାଘ ବଣଭୋଜି କରୁଥିଲେ । ସିଝା ମାଂସ ଥିଲା, ମଦ୍ୟ ଥିଲା, ଅଭାବ ଥିଲା କଞ୍ଚା ମାଂସର । ପ୍ରେମଶୀଳା କିଛି କହିବା ପୂର୍ବରୁ ନିଶା ପ୍ରଭାବରେ ହିତାହିତ ଜ୍ଞାନଶୂନ୍ୟ ହେଇଥିବା ଦୁର୍ବୃତ୍ତଗୁଡ଼ାକ ଝାମ୍ପି ପଡ଼ିଥିଲେ ତା' ଉପରେ । ପ୍ରତିବାଦ କରିବାର ଶକ୍ତି ତା'ର ଲୋପ ପାଇଥିଲା । ସେ କେବଳ ଗଁ ଗଁ କରୁଥିଲା । ସେଇ ଗଁ ଗଁ ଅବସ୍ଥାରେ ତା' ଶରୀରର ପୁଳା ପୁଳା ମାଂସ ଆହାର ହୋଇଗଲା ହିଂସ୍ର କ୍ଷୁଧିତ ପଶୁମାନଙ୍କର । ସେ ସମ୍ପୂର୍ଣ୍ଣ ଚେତା ହରେଇଦେଲା ।

ଚେତା ଫେରିବା ବେଳକୁ ସେ ନିଜକୁ ଆବିଷ୍କାର କଲା ଏକ ନର୍ସିଂହୋମ୍‌ରେ । ଅଚିହ୍ନା ଯୁବକଟିଏ ତା' ପାଖେ ପାଖେ ରହୁଥିଲା । ଡାକ୍ତର ପରାମର୍ଶ କରୁଥିଲ । ତା' ଭଲମନ୍ଦ କଥା ବୁଝୁଥିଲା । ପୋଲିସ୍ ଓ ଗଣମାଧ୍ୟମ ଦୃଷ୍ଟିରୁ ଘଟଣାଟିକୁ ଏଡ଼େଇ ରଖିଥିଲା ଯୁବକଟି । ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କ ହତ୍ୟା ସମଗ୍ର ଓଡ଼ିଶାକୁ ଅସ୍ତବ୍ୟସ୍ତ କରୁଥିବାବେଳେ ଏ ଘଟଣାଟି ଆହୁରି ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରିବ ବୋଲି ସେ ଜାଣିଥିଲା ।

ପ୍ରେମଶୀଳା ଧୀରେ ଧୀରେ ସୁସ୍ଥତା ଲାଭ କରିଆସୁଥିଲା । ନର୍ସିଂହୋମ୍‌ରୁ ଡିସ୍‌ଚାର୍ଜ ହେବାକୁ ପଡ଼ିବ । ଡିସ୍‌ଚାର୍ଜ ହେବାର ପୂର୍ବଦିନ ସନ୍ଧ୍ୟାରେ ଦୁହେଁ ବସିଥିଲେ ବାଲ୍‌କୋନୀରେ । ଯୁବକଟି ଆଉ ପ୍ରେମଶୀଳା ପାଖରେ ଅଚିହ୍ନା ନଥିଲା, ସେ ଜାଣିସାରିଥିଲା ସେ ସ୍ଥାନୀୟ ସରକାରୀ କଲେଜରେ ଅଧ୍ୟାପକ ଚାକିରି କରୁଥିବା ଶୋଭନ ଶତପଥୀ ।

ପ୍ରେମଶୀଳାର ଘର ଠିକଣା ଜାଣିବାକୁ ଚାହିଁଥିଲା ଶୋଭନ୍ । ତା' ପାଖରେ ଉତ୍ତର ନଥିଲା । ସେ ନିଜେ ଜାଣି ନଥିଲା ତା' ଗାଁର ନାଁ କ'ଣ ? ତା' ଘର କୋଉଠି । ଅଜାବୁଢ଼ା କାନ୍ଧରେ ବସି ଗୋଟାଏ ନଦୀ ପାର ହୋଇ ସେ ଆସିଥିଲା ସହରକୁ । ତାକୁ ସେତେବେଳକୁ ପାଞ୍ଚ ବରଷ ହୋଇଥିଲା । ସେଇ ନଦୀଟା ତା'ର ମନେପଡ଼େ । ଆଉ ମନେପଡ଼େ ଗୋଟାଏ ଗାଁର ଶେଷମୁଣ୍ଡରେ ଘୁଷୁରୀ ଘୁଅ ଗଦା ଗଦା । ଛେଳି ମେଣ୍ଢାମାନଙ୍କର ଫୁର୍‌କୁଟିଆ ଗନ୍ଧ । ପଲପଲ କୁକୁଡ଼ା ଓ ବତକ । ସେମାନଙ୍କର ବିଟିକିଟିଆ ଗନ୍ଧ । ତା'ରି ପାଖରେ ନୁଆଁଣିଆ ଚାଳଘର । ଭିତର ସବୁ ଅନ୍ଧାରିଆ । ଆଉ ମନେ ପଡ଼େ ଗୋଟାଏ ଧୂଆଁଳିଆ, ଉଷୁମାଳିଆ ଗନ୍ଧର ମଣିଷଟିଏ । ମୁହଁ ଭଲକରି ମନେପଡ଼େ ନାହିଁ । ସେଇ ମଣିଷଟା ଦେହରେ ସେ ଲାଖିଯାଇଥିବାର ଝାପ୍‌ସା ଝାପ୍‌ସା ଅନୁଭବ । ଏବେ ସେଇ ଗନ୍ଧ କେବେ କେଉଁଠି କେତେବେଳେ ତା' ନାକରେ ବାଜିଗଲେ ଗୋଟାଏ ଆପଣାର ଭାବ ତା' ସମଗ୍ର ସ୍ନାୟୁକୁ ଅସ୍ଥିର କରିଦିଏ ।

ସେ ତିନି ବର୍ଷର ହୋଇଥିଲା ବାପକୁ ହରେଇଲା । ପାଞ୍ଚ ବର୍ଷର ହେଲାବେଳକୁ ଅଜା ପାଖରେ ଛାଡ଼ି ମାଆ ନୂଆ ଘରସଂସାର କଲା, ତାକୁ ଅଜା ଆଣି ରାୟଗଡ଼ା ମିଶନ୍ ହଷ୍ଟେଲ୍‌ରେ ଛାଡ଼ିଥିଲା । କିଛିଦିନ ପର୍ଯ୍ୟନ୍ତ ଅଜାବୁଢ଼ା କେନ୍ଦୁ, କୁସୁମ, କୋଳି, ଅଁଳା, ଭାଲିଆ, ଆମ୍ବସଢ଼ା, ଚମ୍ପେଇତ, ପାଚିଲା ଆଦି ପୁଟୁଳି କରି ପ୍ରେମଶୀଳା ପାଖକୁ ଆସୁଥିଲା । ତାକୁ କୋଳରେ ବସେଇ ଗେଲ କରୁଥିଲା, ତା' ମୁଣ୍ଡକୁ ସାଉଁଳେଇ ଦେଉଥିଲା, ପୁଣି ଫେରି ଯାଉଥିଲା । କିଛିଦିନ ପରେ ସିଏ ବି ଆଉ ଆସିଲା ନାହିଁ । ତା' ମୁହଁ ବି ପ୍ରେମଶୀଳାକୁ ଅସ୍ପଷ୍ଟ ଲାଗିଲା ।

ପ୍ରେମଶୀଳାର କି ଧର୍ମ ପୂର୍ବରୁ ଥିଲା ସେ ଜାଣିନଥିଲା । ତାକୁ ଏଠାରେ ନୂଆ ଧର୍ମ ନେବାକୁ ହେଲା, ଡୁବେନ୍ ନେଲା । ଛାତିରେ କ୍ରସ୍ ଚିହ୍ନ ପକେଇଲା । ରବିବାର ଦିନ ସମସ୍ତଙ୍କ ସହ ମିଶି ଚର୍ଚ୍ଚରେ ପ୍ରାର୍ଥନା କଲା । ଏମିତିରେ କଟିଗଲା ଦଶ ବର୍ଷ । ସେ ସମ୍ପୂର୍ଣ୍ଣ ଭୁଲିଗଲା ଗାଁ ଓ ତା' ଆକର୍ଷଣ, ତା' ବୁଢ଼ା ଅଜା ଓ ମାଆକୁ ।

ମେଟ୍ରିକ୍ ପାସ୍ ପରେ ଜଣେ ପାଦ୍ରୀଙ୍କ ଦୟାରେ ସେ ବିଷମକଟକ ହସ୍ପିଟାଲରେ ଏଏନ୍‌ଏମ୍ ଟ୍ରେନିଂରେ ଭର୍ତ୍ତି ହେଲା । ଟ୍ରେନିଂ ପରେ ସେ ବାହାର ଦୁନିଆଁକୁ ଆସିବାକୁ ଚାହିଁଲା । ସେଇ ସୂତ୍ରରେ ସେ ପଦମ୍‌ପୁର ଡାକ୍ତରଖାନାରେ ଚାକିରି ଖଣ୍ଡେ ପାଇଲା ।

ତେବେ କି ଠିକଣା ଦେବ ସେ ଶୋଭନକୁ? ଏ ପ୍ରକାର ମାନସିକ ସ୍ଥିତିରେ ପଦମ୍ପୁର ଯାଇ ଡ୍ୟୁଟି ତୁଲେଇବା ତା' ପକ୍ଷେ ସମ୍ପୂର୍ଣ୍ଣ ଅସମ୍ଭବ ।

ସେ ଅସହାୟ ଦୃଷ୍ଟିରେ ଶୋଭନ ମୁହଁକୁ ଚାହିଁଲା, ତା'ଠାରୁ ଆହୁରି ଅସହାୟ ଅନୁଭବ କଲା ଶୋଭନ । ତଳକୁ ମୁହଁ ପୋତି ବାଳ ଅପରାଧୀଟି ପରି ସାଙ୍କୁଡ଼ି ଯାଇ ସେ କହିଲା- "ଆପଣ ସୁସ୍ଥ ହେବା ପର୍ଯ୍ୟନ୍ତ ମୋ ଘରେ ଆଶ୍ରୟ ନେବାରେ ମୋର କିଛି ଆପତ୍ତି ନଥିଲା । କିନ୍ତୁ ମୋ ବୋଉ ଆପଣଙ୍କ ଗଳାର ଲକେଟ୍ ଦେଖିସାରିବା ପରେ ଆପଣଙ୍କୁ ଆମ ଘରକୁ ନ ଆଣିବା ପାଇଁ ବାରମ୍ବାର ତାଗିଦ୍ କରିଛି, ତା'ର ଆପଣଙ୍କ ପ୍ରତି ଦରଦ ଅଛି, ଆପଣଙ୍କ ଦୁଃଖରେ ସେ ମର୍ମାହତ । କିନ୍ତୁ ମୁଁ ତା' ଧାର୍ମିକ ଭାବନା ଉପରେ ଏତେଟିକେ ବି ଆଞ୍ଚ ଆଣିବାକୁ ଚାହୁଁନି ।"

ପ୍ରେମଶୀଳା ଏଥର ମୁହଁ ଖୋଲିଲା- "ଆପଣ ମୋ ପାଇଁ ଯାହା କଲେଣି, ଯୀଶୁ, ଆଲ୍ଲା କି କୃଷ୍ଣ ଯିଏ ବି ହୁଅନ୍ତୁ ଯା'ଠାରୁ ଆଉ ଅଧିକ କିଛି କରିନଥାନ୍ତେ । ମୋ ପାଇଁ ଆଉ ଆପଣ ବ୍ୟସ୍ତ ହୁଅନ୍ତୁନି ।"

ତା' ପାଟିରୁ କଥା ନ ସରୁଣୁ ଶୋଭନ କହିଲା- "ଏବେ ବି ସହରରୁ ଦଙ୍ଗାର ଉତ୍ତେଜନା ପ୍ରଶମିତ ହୋଇ ନାହିଁ । ଲୋକେ ଉତ୍ତ୍ୟକ୍ତ ଅବସ୍ଥାରେ ଅଛନ୍ତି । ମୋର ଜଣେ ଖ୍ରୀଷ୍ଟିୟାନ୍ ବନ୍ଧୁ ଅଛନ୍ତି । ଆପଣ ଯଦି ଚାହିଁବେ ସମ୍ପୂର୍ଣ୍ଣ ସୁସ୍ଥ ହେବା ପର୍ଯ୍ୟନ୍ତ ମୁଁ ତାଙ୍କ ଘରେ ବ୍ୟବସ୍ଥା କରିଦେଇ ପାରେ ।"

ପ୍ରେମଶୀଳା ଶୋଭନର ମୁହଁକୁ ଲକ୍ଷ୍ୟକରି ଗମ୍ଭୀର ସ୍ୱରରେ କହିଲା, "ମଣିଷର ପରିଚୟ ପାଇଁ, ଅସ୍ତିତ୍ୱ ପାଇଁ, ସମ୍ପର୍କ ପାଇଁ ଏଇ ଧର୍ମର ଛାପଟିଏ କ'ଣ ନିହାତି ଆବଶ୍ୟକ ଶୋଭନବାବୁ? ଲକ୍ଷ୍ମଣାନନ୍ଦ ସରସ୍ୱତୀଙ୍କୁ ହତ୍ୟା କରାଗଲା । ସେଥିପାଇଁ ମୋ ଗଳାର ଲକେଟ୍ ଦାୟୀ ନଥିଲା । ଗୁଡ଼ାଏ ବିଭ୍ରାନ୍ତ ମାନସିକତା ମୋତେ ଟାର୍ଗେଟ୍ କଲେ । କ୍ଷୁଧାର୍ତ୍ତ ପଶୁ ପରି ମୋ ପଛରେ ଧାଇଁଲେ, ମୋତେ ପାଇଲେ ସେମାନେ ଜୀଅନ୍ତା ଜାଳି ଦେଇଥାନ୍ତେ । ମୋ ଭାଗ୍ୟ ବଳରୁ ମୁଁ ଖସି ଆସିଲି । ଯେଉଁମାନଙ୍କର କାମନାର ନିଆଁରେ ମୁଁ ଦଗ୍ଧ ହେଲି ସେମାନେ ହିନ୍ଦୁ ନଥିଲେ, ଥିଲେ ଖ୍ରୀଷ୍ଟିଆନ୍ । ମୁଁ ସେମାନଙ୍କୁ ଜାଣେ ।"

"ସହର ସାମ୍ପ୍ରଦାୟିକ ଦଙ୍ଗାରେ ଜଳୁଥିବାବେଳେ ନିଜ ଜୀବନକୁ ପାଣି ଛଡ଼େଇ ମତେ ଯିଏ ନୂତନ ଜୀବନ ଦେଲେ ସିଏ ନିଜକୁ ହିନ୍ଦୁ ବୋଲି କହୁଥିଲେ ବି ସିଏ ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିୟାନ୍, ଶିଖ୍ ଓ ଇସାଇ ଆଦି ସବୁ ଧର୍ମ ଧାରଣା ଉର୍ଦ୍ଧ୍ୱରେ । ଗୋଟାଏ ଦିବ୍ୟ ଚେତନାର ଅଧିକାରୀ । ଦିନେ ଧର୍ମର ଆବଶ୍ୟକତା ହୋଇଥିଲା ବିଶୃଙ୍ଖଳିତ ସମାଜକୁ ଶୃଙ୍ଖଳିତ କରିବା ଉଦ୍ଦେଶ୍ୟରେ, ଶୃଙ୍ଖଳିତ ସମାଜକୁ ଅଶାନ୍ତ କରିବା ଉଦ୍ଦେଶ୍ୟରେ ନୁହେଁ ।"

ଶୋଭନ ପ୍ରେମଶୀଳା ବକ୍ତବ୍ୟର ଯଥାର୍ଥତା ବୁଝୁଥିଲା । କିନ୍ତୁ ଏକଥା ସାଧାରଣ ଜନତାଙ୍କୁ ବୁଝାଇବା ଏତେ ସହଜ ନୁହେଁ । ଧର୍ମର ପ୍ରକୃତ ଅର୍ଥ ବୁଝିଥିବା ମଣିଷ ପିମ୍ପୁଡିଟିଏର

ବି ଅନିଷ୍ଟ କରିବାକୁ ଚାହେଁନା । କିନ୍ତୁ ଧର୍ମର ଛାପ ନେଇ ଯେଉଁମାନେ ନିଜକୁ ଧାର୍ମିକ ବୋଲି ପରିଚୟ ଦିଅନ୍ତି ସେଇମାନେ ସବୁତକ ସାମାଜିକ ବିଭ୍ରାଟ ପାଇଁ ଦାୟୀ ।

ତେବେ କାହିଁକି ଏ ଛାପର ଆବଶ୍ୟକତା ? ପ୍ରେମଶୀଳା ତା' ବେକରୁ କ୍ରସ୍ ଲକେଟ୍ ଥିବା ଚେନ୍‌ଟିକୁ ବାହାର କରି ଆଣି ନିଜ ହାତରେ ଧରିଲା । ଦୁଇ ଆଙ୍ଗୁଠି ଟିପରେ ଚେନ୍‌ଟିକୁ ଘୂରଉ ଘୂରଉ କହିଲା- ସବୁ ବିପର୍ଯ୍ୟୟର ମୂଳ ଯଦି ଏଇ ଅପଦ୍ରବ୍ୟ, ମୁଁ ଆଜି ଏଇଠି ତାକୁ ପରିତ୍ୟାଗ କରୁଛି । ସେତେବେଳକୁ ସେ ତା' ଦୁଇ ଟିପ ଢ଼ିଲା କରିସାରିଥିଲା । ଚେନ୍‌ଟି ଲକେଟ୍ ସହ ଛିଟିକି ଯାଇ ରାସ୍ତାକଡ଼ର ନର୍ଦ୍ଦମାରେ ଖସିପଡ଼ିଲା ।

ଶୋଭନ ଆଦୌ ଆଶ୍ଚର୍ଯ୍ୟ ହେଲାନାହିଁ । ସେ ଅନୁଭବ କଲା ପ୍ରେମଶୀଳା ଅଭ୍ୟନ୍ତରରେ ଯେଉଁ ଆଲୋଡ଼ନ ସୃଷ୍ଟି ହେଉଥିଲା, ଯେଉଁ ଉତ୍ତରିତ ଚେତନାଟିଏ ଆତ୍ମପ୍ରକାଶ ଲୋଡୁଥିଲା, ତାହା ଆଦୌ କୌଣସି ଗୋଟାଏ ନିର୍ଦ୍ଦିଷ୍ଟ ସମ୍ପ୍ରଦାୟର ମାନ ଅଭିମାନ, ଆପତ୍ତି ଅଭିଯୋଗ ଅଥବା ଅସହିଷ୍ଣୁଭାବର ହେତୁ ନୁହେଁ । ପ୍ରକୃତରେ ତା' ହୃଦୟ ଆକାଶ ପରିବ୍ୟାପ୍ତ ହୋଇଯାଉଥିଲା, ତା' ଚେତନା ସମୁଦ୍ର ପରି ବିସ୍ତରି ଯାଉଥିଲା, ସଂକୀର୍ଣ୍ଣ ଧର୍ମଧାରଣାରୁ ମୁକ୍ତି ପାଇ ସେ ଊର୍ଦ୍ଧ୍ୱଗାମୀ ହୋଇ ଯାଉଥିଲା, ଯୀଶୁ କୃଷ୍ଣ ଆଲ୍ଲା ବୁଦ୍ଧ ଏ ସବୁ ତାକୁ ଲାଗୁଥିଲେ ମିଛିମିଛିକା, ପିଲାଖେଳ ପରି । ଏ ସବୁ ଊର୍ଦ୍ଧ୍ୱରେ ଆହୁରି ଗୋଟାଏ ଶକ୍ତି ସେ ଅନୁଭବ କରୁଥିଲା, ଯେଉଁ ଶକ୍ତିର କିଛି ପରିଭାଷା ନଥିଲା, ସଂଜ୍ଞା ନଥିଲା, କିଛି ରୂପରେଖ ନଥିଲା, କିଛି ପ୍ରତୀକ ନଥିଲା । ସେଇ ଶକ୍ତିର ଅନୁଗତ ହୋଇଗଲେ ଧାର୍ମିକ ପଣରେ ହୃଦୟ ଆପେ ଆପେ ପ୍ରେମମୟ ହୋଇଯିବ । ସେଥିପାଇଁ କୌଣସି ବାହ୍ୟପୂଜା ପଦ୍ଧତିର ଆବଶ୍ୟକତା ନାହିଁ । ବ୍ରତ ଉପାସନା ଅଥବା ପ୍ରାର୍ଥନା ପାରାୟଣ ଲୋଡ଼ା ହୁଏ ନାହିଁ ତା' ପାଇଁ । ସେ ଗୋଟାଏ ଅପୂର୍ବ ଅନୁଭବ । ଅଭାବନୀୟ ଭାବ । ସେଇ ଭାବଗତ ହେଇଗଲେ ମଣିଷର ସବୁ ଦୁଃଖ ଯନ୍ତ୍ରଣାର ଅନ୍ତ ହେଇଯିବ । ପ୍ରତ୍ୟେକ ମଣିଷ ଭିତରେ ଅମୃତ ଚେତନା ଉଦ୍‌ଭାସିତ ହୋଇ ଉଠିବ । ଜଣେ ଅନ୍ୟ ଜଣକର ଜୀବନ ନେବା ବଦଳରେ ଜୀବନ ଦେବା ପାଇଁ ପ୍ରସ୍ତୁତ ହୋଇ ରହିଥିବ ସଦାସର୍ବଦା ।

ଶୋଭନ ଲକ୍ଷ୍ୟ କରୁଥିଲା- ପ୍ରେମଶୀଳାର ମୁଖମଣ୍ଡଳ ଗୋଟାଏ ଅପୂର୍ବ ଆଭାରେ ଉକୁଟି ଉଠୁଛି । ଏଇ ନିକଟ ଅତୀତରେ ତା' ଜୀବନ ସାଗରରେ ଯେ ଗୋଟାଏ ପ୍ରଳୟଙ୍କରୀ ସୁନାମୀ ସୃଷ୍ଟି ହୋଇ ଯାଇଛି ସେ ଯନ୍ତ୍ରଣାର ଲେଶମାତ୍ର ଚିହ୍ନ ସେଠାରେ ନଥିଲା । ସେ ବିଶ୍ୱମୟ ହୋଇ ପଡୁଥିଲା । ଜଗତ ପାଇଁ ନିଜକୁ ଉତ୍ସର୍ଗ କରିବାର ସଂକଳ୍ପ, ଗୋଟିଏ ପ୍ରତିବଦ୍ଧତା ସ୍ପଷ୍ଟ ପଢ଼ି ହଉଥିଲା ତା' ମୁହଁରେ ।



# କାଳିସୀ

କୌଶଲ୍ୟା ଯେଉଁଦିନ କାନୁଗୋଇ ଘର ବୋହୂ ଭାବରେ ଏ ଗାଁ ଭୂଇଁରେ ପାଦ ଦେଇଥିଲା, ଲକ୍ଷେ ପଦ୍ମ ଫୁଟିଥିଲା ଗାଁ ମାଟିରେ । ଏ ଗାଁ ଆକାଶ ଉଜ୍ଜଳି ଉଠିଥିଲା । ବୃକ୍ଷଲତା ପଲ୍ଲବିତ ହୋଇ ଉଠୁଥିଲେ । ଗାଁ ମୁଣ୍ଡରେ କୁଳୁକୁଳୁ ହେଇ ବହିଯାଉଥିବା ସାପୁଆ ନଈ ଉଲ୍ଲସିତ ହେଲାପରି ଲାଗୁଥିଲା । ବସା ବାହୁଡ଼ା ପକ୍ଷୀମାନଙ୍କର କୁଳୁରୁକୁଳୁ କଳରବ, ଗୋଠଫେରନ୍ତା ଗୋରୁମାନଙ୍କର ହମ୍ବା ରଡ଼ି ସବୁଠାରେ କେମିତି ଗୋଟାଏ ଅଫୁରନ୍ତ ଆନନ୍ଦ ବାରିହୋଇ ପଡୁଥିଲା । ଶଙ୍ଖ ହୁଳହୁଳି ଧ୍ୱନିରେ ବନ୍ଦାପନା କରି ଶାଶୁ ଏରୁଣ୍ଡି ଡିଆଁଇଁ ତାକୁ ଘର ଭିତରକୁ ନେଇଥିଲେ । କୃତଜ୍ଞତାରେ ବତୁରି ଯାଇଥିଲା କାନୁଗୋଇ ବଂଶର ଗେଲବସର ବୋହୂ କୌଶଲ୍ୟା ।

ଚତୁର୍ଥୀବାସୀ ଶାଶୁ କୌଶଲ୍ୟାର ଦୁଧଅଳତା ରଙ୍ଗର ଗୋରା ତକ୍‌ତକ୍ ପାନପତ୍ର ପରି ମୁହଁଟି ଆଡ଼େ ଚାହିଁ କହିଥିଲେ- ବୋହୂ! ଏ ସଂସାରଛଡ଼ା ପାଗଳଟାକୁ ଘରମୁହାଁ କରିବା ଦାୟିତ୍ୱ ତୋର । ମୁଁ ପାରିଲି ନାହିଁ । ସେଇଥିପାଇଁ ଲକ୍ଷେ ଝିଅ ବାଛି ବାଛି ସୁନାନାକୀ ବୋହୂ ମୁଁ କରିଛି । ତୁ ତାକୁ କାନିରେ ବାନ୍ଧି ରଖିବୁ ।

ମଥାନତ କରି ଶାଶୁଙ୍କ ମୁହଁକୁ ଚାହିଁ ସେ ଲାଜୁଆ ହସଟିଏ ହସି ଦେଇଥିଲା । ସେ ହସଟି ତା' ମୁହଁରେ ଏମିତି ମାଧୁର୍ଯ୍ୟ ଭରିଦେଇଥିଲା ଯେ ଶାଶୁ ଅଭିଭୂତ ହୋଇପଡ଼ିଥିଲେ । ତାଙ୍କର ହୃଦ୍‌ବୋଧ ହୋଇଥିଲା ମୁନି ମନଜିଣା ବୋହୂର ଏ ହସ ତାଙ୍କ ବୈରାଗୀ ପୁଅକୁ ନିଶ୍ଚୟ ବଶୀଭୂତ କରିଦବ । ସେଇ କୌଶଲ୍ୟା ଏବେ ଗାଁ ଦାଣ୍ଡରେ ଟହଟହ ହେଇ ହସୁଛି ।

ଶାଶୁଙ୍କର ତା' ଉପରେ ଥିବା ଭରସାକୁ କେବେ ଅବମାନନା କରି ନଥିଲା କୌଶଲ୍ୟା । ପ୍ରାଣପଣେ ଚେଷ୍ଟା କରିଥିଲା କାନୁଗୋଇ ଘରର ଏକମାତ୍ର ଉତ୍ତରାଧିକାରୀ ଦେବ କାନୁଗୋଇକୁ ତା' ପ୍ରେମପାଶରେ ବାନ୍ଧି ରଖିବା ପାଇଁ । ତା' ଅପରୂପ ସୌନ୍ଦର୍ଯ୍ୟରେ ମୋହାବିଷ୍ଟ କରିବା ପାଇଁ । ତା' ଗୁଣର ମାଧୁର୍ଯ୍ୟରେ ମନ୍ତ୍ରମୁଗ୍ଧ କରିବା ପାଇଁ । କିନ୍ତୁ ସେ ସଫଳ ହୋଇପାରି ନଥିଲା ।

ଦିନ ପରେ ଦିନ ଗଡ଼ି ଚାଲୁଥିଲା । ପୁଅବୋହୂଙ୍କର ଖାପଛଡ଼ା ବ୍ୟବହାର ଶାଶୁଙ୍କ ମନରେ ଆଶଙ୍କା ସୃଷ୍ଟି କରୁଥିଲା । ବେଳ ଅବେଳରେ ସେ କୌଶଲ୍ୟାକୁ କହୁଥିଲେ- "ମୁଣ୍ଡଟାକୁ ଏମିତି ଝୁମ୍ପୁରୁ ଝୁମ୍ପୁରୁ କାହିଁକି କରିଛୁ ? ଆଣିଲୁ ତେଲଗିନାଟା ଆଉ ପାନିଆଟା । ମୁଁ କୁଣ୍ଡେଇ ଦେବି । ତୋ ବୋପା ବାକ୍ସ ଭର୍ତ୍ତି ସଜବାଜ ଜିନିଷ ଦେଇଥିଲା କ'ଣ ସାଇତି ରଖିବା ପାଇଁ ? ଏ ଶାଢ଼ୀଟା ଫିକା ହେଇଗଲାଣି । ଆଉ ପିନ୍ଧିବୁନି । କଚ୍ଛାରେ ପଡ଼ିବ । କାଲିଠୁଁ ନୂଆ ଶାଢ଼ୀ ଖଣ୍ଡେ ବାହାର କରି ପିନ୍ଧିବୁ ।"

କୌଶଲ୍ୟା ସବୁ ଶୁଣି ଟିକେ ହସି ଦେଉଥିଲା । ଶାଶୁଙ୍କ ମନ ରଖିବା ପାଇଁ କେତେବେଳେ ତାଙ୍କ ହାତକୁ ପାନିଆ ବଢ଼େଇ ଦେଉଥିଲା ତ କେତେବେଳେ ନୂଆଶାଢ଼ୀ ଖଣ୍ଡେ ପିନ୍ଧି ଦେଉଥିଲା । ଦୁଇ ଚାରିଦିନ ଅଥବା ଆଠ ପନ୍ଦରଦିନ ମନ୍ତ୍ରଚାଳିତ ପରି ତତ୍ପର ହୋଇ ପଡୁଥିଲା । ନିଜ ଦେହର ଯତ୍ନ ନେଉଥିଲା । ଶାଶୁଙ୍କର ସେବା କରୁଥିଲା ସ୍ୱାମୀ ସେବା କରୁଥିଲା । ଘର ସଜାଡୁଥିଲା, ଅତିଥି ଅଭ୍ୟାଗତଙ୍କୁ ଚର୍ଚ୍ଚା କରୁଥିଲା । ସାହିର ନଣନ୍ଦ ଦିଅରଙ୍କ ସହ ରଙ୍ଗରସ ହେଉଥିଲା, ଅନ୍ୟମାନଙ୍କୁ ରୁମାଲରେ ଏମ୍ବ୍ରୋଡୋରୀ ପକାଇବା ଶିଖଉଥିଲା, ଶାଢ଼ୀରେ ଚୁମୁକି ଲଗା ଶିଖଉଥିଲା । ଏ ସବୁ ବେଶିଦିନ ଚାଲୁ ନଥିଲା । ଧୀରେ ଧୀରେ ଧିମେଇ ଯାଉଥିଲା । ସେ ପୁଣି ଗୋଟାଏ ଅଜଣା ଦୁନିଆକୁ ଚାଲିଯାଉଥିଲା । ଆଠ ଦିନରେ ଥରେ ମୁଣ୍ଡରେ ପାନିଆ ବାଜୁ ନଥିଲା । ମଳିକୋଚଟ ହେବା ପର୍ଯ୍ୟନ୍ତ ପିନ୍ଧା ଶାଢ଼ୀରେ ସାବୁନ୍ ଲାଗୁନଥିଲା । ଘର ଅସଜଡ଼ା ରହୁଥିଲା । ଶାଶୁ କ'ଣ କହୁଥିଲେ ନ କହୁଥିଲେ ତା' କାନରେ ପଶୁ ନଥିଲା, ଯାହା ତାହି ଦି'ଟା ଫୁଟେଇ ଦେଇ ସେ ସ୍ୱାମୀ ଶାଶୁଙ୍କ ଆଗରେ ଥୋଇ ଦେଉଥିଲା । ତରକାରୀ ଅଲଣା ହୋଇଛି ବୋଲି ଶାଶୁ କହିଲେ ଲୁଣଢାଗାଟା ଦୁମ୍ କରି ତାଙ୍କ ପାଖରେ ଥୋଇ ଦେଉଥିଲା । ଶାଶୁଙ୍କ ଗୋଡ଼ ମୋଡ଼ି ଦେବାବେଳେ ହାତ ଦୁଇଟା ସେମିତି ଗୋଟାଏ ଜାଗାରେ ଅଟକି ଯାଉଥିଲା । ଶାଶୁ କହୁଥିଲେ, ଶୋଇପଡୁଛୁ କି ? ସେତିକି ଥାଉ- ଯା ! ସେ ଚମକି ପଡୁଥିଲା । ଦୁଇପାଦ ଘୋଷାରି ଘୋଷାରି ଶୋଇବା ଘରକୁ ଯାଉଥିଲା । ସେତେବେଳକୁ ସ୍ୱାମୀର ଶୁଭୁଥିଲା ଘୁଙ୍ଗୁଡ଼ି । ସେ ଚୁପ୍‌ଚାପ୍ ଶେଯର ଗୋଟିଏ ଧାରରେ ଶୋଇପଡୁଥିଲା ତ କେବେ ତଳେ କାନିପାରି ଶୋଇପଡୁଥିଲା ।

ରାତି ଅଧରେ କୌଶଲ୍ୟାର ଚିତ୍କାର ଶୁଣି ଶାଶୁଙ୍କର ନିଦ ଭାଙ୍ଗୁଥିଲା । ନିଦରେ ବିଳିବିଳେଇ ସେ ହାଉ ହାଉ କାନ୍ଦି ଉଠୁଥିଲା ତ କେବେ ଗଁ ଗଁ ଗର୍ଜନ କରି ବାଡ଼େଇ ପିଟି ହେଉଥିଲ । ଦେବବ୍ରତ ନିଦ ଭାଙ୍ଗୁଥିଲା । ସେ ତାକୁ ଥାପୁଡ଼େଇ ଦେଉଥିଲା । ସ୍ୱପ୍ନ ଦେଖିଲ କି ବୋଲି ପଚାରୁଥିଲା ଓ ଶୋଇ ପଡ଼ିବାକୁ କହୁଥିଲା । କୌଶଲ୍ୟା ଶୋଇବାକୁ

ଚେଷ୍ଟା କରୁଥିଲା । ନିଦ ହେଉ ନଥିଲା । ଦେହସାରା ଶିର୍ ଶିରେଇ ଯାଉଥିଲା । ସତେ ଅବା ଦୁନିଆଯାକର ପୋକ ତା'ରି ଉପରେ ରୁଣ୍ଡ ହୋଇ ଯାଲୁବାଲୁ ହେଉଛନ୍ତି । ସେ ଉଠି ବସୁଥିଲା, ଢକ୍‌ଢ଼କ୍ କରି ଢାଳକଯାକ ପାଣି ପିଇଯାଉଥିଲା, କବାଟ ଖୋଲି ବାହାରକୁ ଆସୁଥିଲା । କୋଉଦିନ କିଟିକିଟି ଅନ୍ଧାର ତ ପୁଣି କୋଉଦିନ ରାଣୀଫୁଲ ପରି ଜହ୍ନ । ଅଗଣାରେ ବସି ବସି ସେ ଜହ୍ନକୁ ଚାହୁଁଥିଲା ତ କେବେ ତାରା ଗଣୁଥିଲା ।

ଶାଶୁ କବାଟ ଖୋଲି ବାହାରକୁ ଆସନ୍ତି । ଅଗଣାରେ ହୁଙ୍କାଟାପରି ବସିଥିବା ବୋହୂକୁ ଦେଖି ବିରକ୍ତ ହୁଅନ୍ତି । ତାଗିଦ୍ କରି କହନ୍ତି- ରାତି ବିକାଳ, କେତେବେଳେ କୋଉ କଥା, ଏଠି କାହିଁକି ବସିଛୁ ? ଭିତରକୁ ଯାଆ ।

ସେ ଧୀରେ ଉଠି ଘର ଭିତରକୁ ଯାଉଥିଲା । ଶାଶୁଙ୍କ ମନରେ ଛନକା ପଶିଲା । ବୋହୂଟାକୁ କିଏ ଗୁଣିଟୁଣି କଲା କି ଆଉ ? ଏମିତି ବାଇ ବାତୁଳି କାହିଁକି ହଉଛି ? ସକାଳକୁ ଗୁଣିଆ ଡାକି ସବୁ କଥା କହିଲେ । ବୋହୂଟାକୁ ଭଲ କରିଦେବା ପାଇଁ ନେହୁରା ନିଉଛାଳି ହେଲେ । ସବୁ ଶୁଣି ଗୁଣିଆ କହିଲା- ଜାଣିଲ ମା' ! ବୋହୂକୁ ତମର କାଳପୁରୁଷ ମାଡ଼ିବସୁଛି । ଏଇ ତାବିଜ ନିଅ । ଏଇ କାଟପାଣି ନିଅ । ଶନିବାର ଦିନ ଅତୁଠରୁ ଜଳ ଆଣି ଏ ତାବିଜକୁ ଧୋଇବ । ତା'ପରେ କଞ୍ଚା କ୍ଷୀରରେ ବୁଡ଼େଇ ବେକରେ ପକେଇବ । ଏ କାଟପାଣି ଗାଧୋଇ ସାରି ସାତ ଦିନ ପିଇବ । ସବୁ ଅଶୁଭ ଦୃଷ୍ଟି କଟିଯିବ ।

ଶାଶୁ ଚାଉଳ ସେରେ, କଞ୍ଚା କଦଳୀ ଦି'ଟା, ସାରୁ ଦି'ପୁଆ, ବାଇଗଣ ଦି'ଟା ଗୁଣିଆ କାନିରେ ଅଜାଡ଼ି ଦେଇ ତା' ହାତରେ ଟଙ୍କା ପଚାଶଟା ଗୁଞ୍ଜିଦେଲେ । ଗୁଣିଆ ତା' ରାସ୍ତା ଧରିଲା ।

ଶାଶୁ ଏଥର ସ୍ୱପ୍ନ ଦେଖନ୍ତି, ଅଗଣାରେ ସିଏ ଗୋଡ଼ ଲମ୍ବେଇ ବସିଛନ୍ତି । ତାଙ୍କ ପଛପଟୁ ଗୋଟାଏ ନାତି ଆସି ବେକରେ ଓହଳି ପଡ଼ିଲାଣି ତ ଆଗଆଡୁ ଆଉ ଗୋଟାଏ ଆସି ଲଥ୍‌କରି କୋଳରେ ବସିପଡ଼ିଲାଣି । ପାନ ଛେଚୁ ଛେଚୁ ସେ କହନ୍ତି ରହ ରହରେ ଅବାଇଜଗୁଡ଼ାକ । ମୁଁ ଟିକେ ପାନ ଖାଇସାରେ ।

ଶାଶୁଙ୍କର ସ୍ୱପ୍ନ ଯେମିତି ସ୍ୱପ୍ନରେ ରହିଯାଏ । ଶାଶୁ ଯାହା ଚାହନ୍ତି ନାଇଁ ସେଇଆ ହୁଏ । ପ୍ରତିମାସରେ କୌଶଲ୍ୟାର ନିର୍ଦ୍ଧାରିତ ଦିନ ଆସିବାରେ ବିଳମ୍ବ ଘଟେନାହିଁ । ଶାଶୁଙ୍କର ମନ ପୋଡ଼ିଯାଏ । ଦିନେ ଦୁଇଦିନ ଗୁମ୍‌ସୁମ୍ ହେଇ ରହନ୍ତି । ଦେଖେଇ ଶିଖେଇ କହନ୍ତି । କୌଶଲ୍ୟା ସବୁ ଶୁଣେ ମନ ମାରିଦିଏ । ନିଜ ଦୁଃଖ ଭୁଲି ଶାଶୁଙ୍କ ଦୁଃଖରେ ଦୁଃଖି ହୋଇପଡ଼େ ।

ସେଦିନ ଭାଦ୍ରବ ମାସ ମଙ୍ଗଳବାର । ମଙ୍ଗଳା ଓଷା । ଶାଶୁ ବରାଦ ଦେଲେ ପୂର୍ବଦିନରୁ । ମଙ୍ଗଳା ମାଆ ଡାକିଲେ ଓ କରନ୍ତି । ତାଙ୍କୁ ପୂଜିଲେ ତୋ ଦୁଃଖ ଶୁଣିବେ । ଏ

କୁଳକୁ ବିହନ ବକଟେ ଦେବେ । କୌଶଲ୍ୟା ସାରା ଦିନ ଉପାସ ରହି ମଙ୍ଗଳା ଓଷା କଲା ।

ତା' ପରଦିନ । ଶାଶୁ ବିରକ୍ତ ହେଲେ । ସକାଳ ପହରୁ ବୋହୂଟା ପୋଖରୀ ତୁଠକୁ ଗାଧୋଇବାକୁ ଗଲା ଯେ ବେଳ ଆସି ଦି'ଘଡ଼ି ହେଲାଣି । ସେ ବାଡ଼ିଆଡ଼କୁ ଯାଇ ହାଉଳି ଖାଇଗଲେ ।

କୌଶଲ୍ୟା ପୋଖରୀ ତୁଠ ସାହାଡ଼ା ଗଛଟାକୁ ଚଢ଼ିଯାଇ ଗୋଡ଼ ଦୁଇଟା ଦୋହଲାଉଛି, କାହାରିକୁ ନିଘା ନାହିଁ । ହାତରେ ହାତେ ଲମ୍ବ ଦାନ୍ତକାଠି ଖଣ୍ଡେ ଧରି ଦାନ୍ତ ଉପରେ ଢିଅ ମାରୁଛି । ମୁଣ୍ଡ ମୁକୁଳା । ପିନ୍ଧା ଶାଢ଼ୀର ଠିକ୍ ଠିକଣା ନାହିଁ । ଅଧେକ ଭୂଇଁରେ ଲୋଟୁଛି ।

ମାଆର ଚିତ୍କାର ଶୁଣି ଦେବ ବାଡ଼ି ଆଡ଼କୁ ଧାଇଁଲା । କୌଶଲ୍ୟାକୁ ଦେଖି ସେ ନିଜ ଆଖିକୁ ବିଶ୍ୱାସ କରିପାରିଲା ନାହିଁ । ଶିଡ଼ି ଚଢ଼ିବାକୁ ଡରୁଥିବା ସ୍ତ୍ରୀ ଲୋକଟା କେମିତି ଚଢ଼ିଯାଇଛି ଗଛ ଉପରକୁ । ମାଆ ବିକଳ ହେଇ କହୁଛି- ଆଲୋ ! ଭୂଆଷୁଣୀଟା ତଳକୁ ଓହ୍ଲେଇ ଆ । କିଏ କୁଆଡ଼େ ଆସିବ । ଇୟେ କି ଅଭିଲା କଥା ।

କୌଶଲ୍ୟା ହସୁଥିଲା ଟହଟହ । ବେପରୁଆ ହସ । ମା'ପୁଅଙ୍କର ଉପସ୍ଥିତି ସେ ଅନୁଭବ କରିପାରୁ ନଥିଲା ।

ଗାଁ ସାରା ରାଷ୍ଟ୍ର ହେବା ପାଇଁ ମୁହୂର୍ତ୍ତେ ଲାଗିଲା ନାହିଁ ଯେ କାନୁଗୋଇ ଘର ବୋହୂକୁ ପ୍ରେତ ଗ୍ରାସିଛି ।

ସେ ଅଞ୍ଚଳର ପ୍ରତିପତ୍ତିଶାଳୀ ଗୁଣିଆ ନରହରି ଓଝା । ପ୍ରେତ ଛଡ଼ାଇବା ପାଇଁ ମଣିଷ ଖପୁରୀରେ ଦୀପ ଜାଳି ଘୁଷୁରି ଘିଅ ଧୂଆଁ ଦେଉଥିଲା ।

ଏକ ବିକଟ ଗନ୍ଧରେ କୋଠରୀଟା ନର୍କପୁରୀର ଭ୍ରମ ସୃଷ୍ଟି କରୁଥିଲା । ଗୋଟାଏ କିଳିକିଳା ରଡ଼ିରେ ଚଉଦିଗ ଉଚ୍ଛନ୍ନ କରି ଓଝା କହୁଥିଲା- କହ କହ ତୁ କିଏ ? ତୁ କାହିଁକି ଆସିଛୁ ? ଏଠୁ ଯିବୁ ନା ପାନେ ଦେବି ତତେ । ତା' ନରମ ପିଠିରେ ଶାଙ୍କୁଚ ଲାଙ୍ଗୁଡ଼ରେ କଷିକରି ଦୁଇ ପାହାର ବସେଇଦେଲା ।

ଦୁଇ ତିନିଟା ପୁରୁଷ ଲୋକ କୌଶଲ୍ୟାର ଦୁଇ ହାତ ଓ ଗୋଡ଼କୁ ମାଡ଼ି ବସିଥିଲେ । କୋଉଠି ଥିଲା ଏତେ ବଳ ତା' ଦେହରେ ଗୋଟାଏ ଝାଙ୍କରେ ସେମାନଙ୍କୁ ଛାଟିଦେଇ ହୁମ୍ପା ମାରି ଚଢ଼ିଗଲା ଖଟ ଉପରକୁ ଓ କଣ୍ଠ ଫଟେଇ ଗର୍ଜ୍ଜନ କରି କହିଲା- ନା' ନା' ମୁଁ ଯିବିନି, ତମେ ସବୁ ମୋର କ'ଣ କରିବ ? ମୁଁ ଏଇଠି ରହିବି, ଏଇଠି ରହିବି । ବାହାରିଯାଅ ସବୁ ଏ ଘରୁ । ନ ହେଲେ ସମସ୍ତଙ୍କୁ ଖତମ୍ କରିଦେବି ।

ଓଝା ଗୁଣୁଗୁଣୁ ହେଇ କହିଲା- ଭାରି ଦୁଷ୍ଟ ଆତ୍ମା । ରହ- ରହ ତୋ ମଜା ଚଖେଇ ଦଉଛି ।

କ'ଣ ମୁଠାଏ ଛାଟିଦେଲା ନିଆଁ ଉହ୍ମେଇକୁ ଯେ, ଘର ଭିତରଟା ଧୂଆଁ ପୂର୍ଣ୍ଣ ହୋଇଗଲା । ତା' ସାଙ୍ଗରେ କିଛି ନିଆଁଝୁଲ ଘରସାରା ଖେଳେଇ ହେଇଗଲା । କୌଶଲ୍ୟା ଆହୁରି ଅତିଷ୍ଠ ହୋଇପଡ଼ିଲା । ସେତେବେଳକୁ ଦୁଇଟା ପୁରୁଷ ତାକୁ ପୁଣି ଥରେ କାବୁ କରିସାରିଲେଣି । ଓଝା ମାଟି ସରାରେ ଥିବା ସରାଟାଯାକ ପାଣି ତା' ମୁହଁକୁ ଛାଟିଦେଇ ସାଙ୍କୁଚ ଲାଙ୍ଗୁଡ଼ରେ ଦୁଇ ପାହାର ସପାଟ୍ ସପାଟ୍ ବସେଇ ଦେଲା । ଯନ୍ତ୍ରଣାରେ ବ୍ୟସ୍ତ ବିକଳ ହୋଇ ସେ କିଳିକିଳା ରଡ଼ିରେ କହିଲା-

ହଁ ହଁ ମୁଁ ଯିବି । ମତେ ଛାଡ଼ ଛାଡ଼, ମୁଁ ଯିବି । ଏକା ଡିଆଁରେ ସେ କୋଠରୀ ଭିତରୁ ବାହାରି ଅଗଣା ଅତିକ୍ରମ କରି ଗାଁ ଦାଣ୍ଡରେ ପାଦ ଦେଲା ଓ ଅଣନିଃଶ୍ୱାସୀ ହୋଇ ଆଗକୁ ଧାଇଁଲା । ତା' ପଛେ ପଛେ ଓଝା ହାତରେ ପାଣିଢ଼ାଳ ଧରି ଧାଉଁଥିଲା । ସେମାନଙ୍କୁ ଅନୁସରଣ କରୁଥିଲେ ଦେଖଣାହାରୀ ଆବାଳ ବୃଦ୍ଧବନିତା ।

ଗାଁ ମୁଣ୍ଡରେ ଅଚେତ ହୋଇ ପଡ଼ିଥିବା କୌଶଲ୍ୟାକୁ ପାଷାମ କରି ଗୃହକୁ ଅଣାଯାଇଥିଲା ।

ଏ ଘଟଣା ପରଠାରୁ କୌଶଲ୍ୟା ତା'ର ନାରୀସୁଲଭ ସ୍ୱାଭାବିକତା ହରେଇଥିଲା । ସିଏ ଆଉ ଆଗଭଳି ଘଣ୍ଟା ଘଣ୍ଟା ଉଦାସ ହେଇ ଶୂନ୍ୟକୁ ଚାହୁଁନଥିଲା କି ପୂର୍ଣ୍ଣମୀ ରାତିର ଜହ୍ନ ତାକୁ ଅସ୍ତବ୍ୟସ୍ତ କରୁନଥିଲା । ସେ ଗୋଟାଏ ଭିନ୍ନ ମଣିଷ ପାଲଟିଗଲା । ତା'ର ଲଜ୍ଜାଶୀଳତା ରହିଲା ନାହିଁ । ସମ୍ଭ୍ରମତା କୁଆଡ଼େ ଅପସରିଗଲା । ଗୁରୁ ଗୁରୁଜନ ମାନଥାନ ଜ୍ଞାନ ରହୁନଥିଲା । ଘରକରଣା ବାଟବଣା ହୋଇଯାଉଥିଲା । ଗଣ୍ଡାଏ ଫୁଟେଇ ସ୍ୱାମୀ ଶାଶୁଙ୍କୁ ଦେଲାବେଳକୁ ଦିନ ତିନିଟା ବାଜୁଥିଲା ।

କଥା କହୁ କହୁ ହସି ହସି ଗଡ଼ିଯାଉଥିଲା । ଦେହରେ ଲୁଗାପଟାର ଠିକ୍‌ଠିକଣା ରହୁନଥିଲା । ଶୀଳ ସଂଯତ ଓ ମାପିଚୁପି କଥା କହୁଥିବା ବୋହୂଟାର ମୁହଁରୁ ଶବ୍ଦ ସବୁ ଅନର୍ଗଳ ବାହାରୁଥିଲା । ସେଥିରେ ସଂଗତି ନଥିଲା ଶୀଳତା ନଥିଲା । ମର୍ଯ୍ୟାଦାବୋଧ ନଥିଲା ।

ଦିନେ ଦିନେ କୌଶଲ୍ୟାର ଦୌରାତ୍ମ୍ୟ ବୃଦ୍ଧି ପାଏ । ଘରର ଜିନିଷପତ୍ର ଫିଙ୍ଗା ଫୋପଡ଼ା କରେ । ଅସଭ୍ୟ ଭାଷାରେ ଦେବଙ୍କୁ ଗାଳି ଗୁଲଜ କରେ । ତା' ଲୁଗାପଟା ଟାଣି ଓଟାରି ପକାଏ । ତାକୁ ପାଖରେ ଦେଖିଲେ ଅସହିଷ୍ଣୁ ହୋଇପଡ଼େ । ଘରକାମ କରେ ନାହିଁ । ବିଛଣାରେ ପଡ଼ିରହେ । ବରଡ଼ାପତ୍ର ପରି ଦେହ ଥରେ । ହାତ ମୁଠା ମୁଠା କରି ସେ ଛୋବ ଚାଲିଯାଏ । ଦାନ୍ତ ଜାବ ପଡ଼ିଯାଏ । ଆଖି ଖୋଷିଦିଏ କୋରଡ଼କୁ ।

ଏଥର ଆଉ ଗୋଟାଏ ପ୍ରଭାବଶାଳୀ ଗୁଣିଆକୁ ଡକା ହୁଏ । ସେଇ ପ୍ରେତଛଡ଼ା ପ୍ରହସନ । ପ୍ରଥମେ ପ୍ରଥମେ କୌଶଲ୍ୟାର ଦାମ୍ଭିକତା । ତା'ପରେ ଗୁଣିଆର ଅମାନୁଷିକ ଉପଦ୍ରବ । ଶେଷରେ କୌଶଲ୍ୟାର ଆତ୍ମସମର୍ପଣ ।

ଏମିତି ଘଟଣା ବାରମ୍ବାର ଘଟେ । ଆଗରୁ ବର୍ଷେ ଛ' ମାସରେ ହେଉଥିଲା । ଏଣିକି ମାସରେ ଥରେ ଦୁଇଥର । ଆହୁରି ବ୍ୟବଧାନ କମିଲା । ନିତି ମଲୁକୁ ଦୟା ନାହିଁ । ଗାଁ ଲୋକଙ୍କ ମୁହଁରେ କିଏ ବାଡ଼ବତା ଦେବ ? କିଏ କହିଲା ମୁର୍ଚ୍ଛିରୋଗ ତ କିଏ କହିଲା ହିଷ୍ଟ୍ରିଆ ଆଉ କେହି କେହି ମୁହଁମୋଡ଼ି କହିଲେ- ନବରଙ୍ଗ ହଉଛି ।

ଦିନ ତ କଟିଯାଏ, ରାତି କଟେନାହିଁ କୌଶଲ୍ୟାର । କଣ୍ଟକିତ ଲାଗେ ଶେଯ । କଡ଼ ଲେଉଟାଏ । ଉଠି ପାଣି ପିଏ । ଶୋଇବାକୁ ଚେଷ୍ଟା କରେ । ଆଖି ପଡ଼ି ଆସୁ ଆସୁ ପୁଣି ଗୋଟାଏ ଦୁଃସ୍ୱପ୍ନ ଦେଖି ସେ ଚିତ୍କାର କରେ । ଭୟରେ ଗାଁ ଗାଁ ଶୁଭେ ତା' କଣ୍ଠସ୍ୱର । ଛାତିରେ ଅଜସ୍ର ଯନ୍ତଣା । ଚାରିପାଖରେ ଝଡ଼ ବତାସ ପରି ସୁ ସୁ ଗର୍ଜନ । ଯନ୍ତ୍ରଣାରେ କଣ୍ଠନଳୀ ଫାଟିଯିବା ପରି ଲାଗେ । ସେ କ'ଣ ଗୁଡ଼ାଏ କହିବା ପାଇଁ ଚେଷ୍ଟା କରେ । ସ୍ପଷ୍ଟ ଉଚ୍ଚାରିତ ହୁଏନାହିଁ । ବିଳିବିଳେଇ ଉଠେ ।

ସ୍ୱାମୀର ନିଦ ଭାଙ୍ଗେ । ବ୍ୟସ୍ତ ହୋଇପଡ଼େ । କୌଶଲ୍ୟାର ଯନ୍ତଣାର ହେତୁ ତାକୁ ଦୁର୍ବୋଧ ରହେନାହିଁ । ସେ ତାକୁ ନିଜ ଆଡ଼କୁ ଆଉଜେଇ ଆଣେ । ସାନ୍ତ୍ୱନା ଦିଏ । ଦେହ ମୁଣ୍ଡରେ ହାତ ବୁଲେଇ ଆଣେ । ଆଶା ଓ ଆଶ୍ୱାସରେ କୌଶଲ୍ୟା ଜାବୁଡ଼ି ଧରେ ସ୍ୱାମୀଙ୍କୁ । ଖୁବ୍ ଗୋଟାଏ ଆତ୍ମପ୍ରତ୍ୟୟୀ ହୋଇ ଦେବ ନିବିଡ଼ ଭାବେ ଅନୁଭବ କରେ କୌଶଲ୍ୟାକୁ । ଆବେଗ ପ୍ରବଣ ହୋଇଉଠନ୍ତି ଦୁହେଁ । ଏଭରେଷ୍ଟ ଛୁଇଁବାର ବ୍ୟଗ୍ରତାରେ ଉତ୍କଣ୍ଠାରେ ଓ ଆନନ୍ଦର ଆତିଶଯ୍ୟରେ ମୁହୂର୍ତ୍ତକ ପାଇଁ ଉତ୍‌ଫୁଲ୍ଲିତ ହୋଇ ଉଠନ୍ତି । ପୁଣି ଗୋଟାଏ ଅସଫଳ ପ୍ରଚେଷ୍ଟା । ବାହୁ ବନ୍ଧନ ଶିଥିଳ ହୋଇଯାଏ । ମଲା କଙ୍କଡ଼ା ପରି ଅସାଡ଼ ହୋଇଯାଏ ଦେବ । କଡ଼ ଲେଉଟେଇ ମୁହଁମାଡ଼ି ସୁଁ ସୁଁ ହୁଏ କୌଶଲ୍ୟା । ଦେବ ଉଠି ବସେ । ବିକଳ ହୁଏ । ଦୁଇ ହାତ ମୁଠା ମୁଠା କରି ମୁଣ୍ଡବାଳ ଝିଙ୍କେ । ଗାଲ ରାମ୍ପୁଡ଼େ । ପାଟିକରି କାନ୍ଦିବାକୁ ତା'ର ଇଚ୍ଛା ହୁଏ, କାନ୍ଦିପାରେ ନାହିଁ । ତା' ବ୍ୟର୍ଥତାକୁ ଆତ୍ମସ୍ଥ କରେ । ବିଫଳତାକୁ ପରଦା ଢାଙ୍କେ । ସେ ପୁରୁଷ । ଆତ୍ମାଭିମାନ ତା'ର ଧର୍ମ । ଅହଂକାର ତା'ର ଜନ୍ମଗତ ଅଧିକାର । ରାତ୍ରିର ଅତୃପ୍ତି, ଅସହାୟତା ଓ ଶୂନ୍ୟବୋଧତା ବିକୃତିର ରୂପନିଏ ନାରୀ ଅଙ୍ଗରେ । ସେଇ ବିକୃତିକୁ ସେ ଯଦି ତା'ର ବାରହାତ କାନିରେ ଘୋଡ଼େଇ ନ ପାରିଲା ସେ କୁଲକ୍ଷଣୀ, କଳଙ୍କିନୀ, ମୁଖରା । ବିଷକୁ ଅମୃତାୟିତ କରି ନପାରିଲେ ତା' ନାରୀ ଜନ୍ମ ବୃଥା । ପୁରୁଷର ଅସମାର୍ଥପଣକୁ ସମର୍ଥପଣରେ ରୂପାନ୍ତରିତ

କରି ନପାରିଲେ ନାରୀ ଜୀବନ ଅସାର । ସମାଜ ପାଇଁ ପରିବାର ପାଇଁ ସେ ଅଶୁଭ । ଅମଙ୍ଗୁଳି । ସେ ନିଷ୍ଫଳା, ବନ୍ଧ୍ୟା । ଆହୁରି କେତେ କ'ଣ । ତା' ମୁଖ ଦର୍ଶନ ପାପ ।

ରାତି ପାହେ । ସବୁଦିନ ପରି ସୁରୁଜ ଦେବତା ତା' ନାଲି ନାଲି କିରଣ ବୁଣି ଦିଅନ୍ତି । ରାତ୍ରିର ଅନୁଭୂତିକୁ ଭୂଲିବାକୁ ଚେଷ୍ଟାକରେ, ପାରେ ନାହିଁ । ତା' ସୃଜନୀ କାମନା ତାକୁ ଅସ୍ତବ୍ୟସ୍ତ କରେ । ସେ ବି ପଲ୍ଲବିତ ହୁଅନ୍ତା, ପୁଷ୍ପିତ ହୁଅନ୍ତା । ଫଳବତୀ ହୁଅନ୍ତା । ସେ ବନ୍ଧ୍ୟା । ଅଫଳନ୍ତି ଗଛ । ଶୁଭକାମରେ ଭାଗନେବା ଅଧିକାର ତା'ର ନାହିଁ । ନିଜ କପାଳକୁ ଅଭିସଂପାତ ଦିଏ । ତା'ର ଏ ନିଷ୍ଫଳ ଜୀବନ ପୂର୍ବଜନ୍ମର ପାପର ଫଳ ବୋଲି ଧରିନିଏ । ଏଥିରୁ ତା'ର ମୁକ୍ତି ଦରକାର । କିଏ ଦେବ ମୁକ୍ତି ? ଧର୍ମକର୍ମ ? ପୂଜାପାଠ ? ଉପାସ ବ୍ରତ ? ମଙ୍ଗଳା ମାଆଙ୍କ କୃପା ? ଧ୍ୟାନ ଧାରଣା ? ମଙ୍ଗଳା ମା'ଙ୍କ ପାଦତଳେ ନିଜକୁ ଉତ୍ସର୍ଗୀକୃତ କରିଦିଏ କୌଶଲ୍ୟା ।

ଗୋଟିଏ ଦିଗରେ ଜୈବିକ କ୍ଷୁଧା ତ ଅନ୍ୟ ଦିଗରେ ମାନସିକ କ୍ଷୁଧା । ନିଜକୁ ସନ୍ତୁଳିତ କରିପାରେ ନାହିଁ । ତା' ଭିତରେ ସୃଷ୍ଟି ହୁଏ ଅଣଚାଷ ଝଡ଼ । ଅହରହ ଗୋଟାଏ ଗଭୀର ଅନ୍ତର୍ବେଦନା ତାକୁ ଦଗ୍ଧ କରିପକାଏ । ତା'ର ବିଚାର ବୁଦ୍ଧି ବାଟବଣା ହୁଏ । ନିଜର ପରିଚୟ ସେ ହଜେଇ ଦିଏ । ଅହରହ ଗୋଟାଏ ଭିନ୍ନ ଦୁନିଆରେ, ଭିନ୍ନ ଚେତନାରେ ସେ ନିମଗ୍ନ ରହେ । ତା'ର ଅସ୍ମିତା ଲୋପ ପାଇଯାଏ ।

ସେଦିନ ଚୈତ୍ର ମଙ୍ଗଳବାର । ସାହିର ଅନ୍ୟ ସ୍ତ୍ରୀମାନଙ୍କ ପରି କୌଶଲ୍ୟା ମୁଣ୍ଡ ଧୋଇ ଗାଧୋଇ ଉପବାସ ରହିଲା । ନୂଆ ଶାଢ଼ୀ ପିନ୍ଧି ମଙ୍ଗଳା ପୂଜିବାକୁ ଗଲା । ମଙ୍ଗଳାଙ୍କ ପୀଠ ଅଗରୁ ଚନ୍ଦନ ଧୂପ ଓ ଝୁଣା ଧୂଆଁରେ ମହକି ଉଠୁଥିଲା । ଘଣ୍ଟ ହୁଳହୁଳି ଧ୍ୱନିରେ ଆସ୍ଥାନ ମୁଖରିତ ହେଉଥିଲା । ଓଷେଇତିମାନେ ହାତଯୋଡ଼ି ମଙ୍ଗଳା ମାଆଙ୍କ ପାଖରୁ ଆଶୀର୍ବାଦ କାମନା କରୁଥିଲେ । କୌଶଲ୍ୟା ବି ଦୁଇ ହାତ ଯୋଡ଼ି ଆଖି ବନ୍ଦ କରି ନିଜ ଦୁର୍ଦ୍ଦଶା ଉପସ୍ଥାପନା କରୁଥିଲା ମାଆଙ୍କ ପାଦତଳେ । ଆଖିରୁ ତା'ର ଧାର ଧାର ଲୁହ ନିଗିଡ଼ି ଯାଉଥିଲା । ସେ ନିଜ ଉପରୁ ନିୟନ୍ତ୍ରଣ ହରାଇଲା । ହଠାତ୍ ତା' ଦେହ ବରଡ଼ା ପତ୍ର ପରି ଥରିବାକୁ ଲାଗିଲା । ପାଦ ଦୁଇଟା ସ୍ଥିର ରହିଲା ନାହିଁ । ସେ ଭିଡ଼ ଠେଲି ଆଗକୁ ମାଡ଼ି ଚାଲିଲା ଓ ଲଥ୍‌କରି ବସିପଡ଼ିଲା ମାଟିରେ ଯେଉଁଠି ମଙ୍ଗଳା ମା'ଙ୍କ ଆସ୍ଥାନ ହୋଇଥିଲା । ମୁଣ୍ଡ ଆଗକୁ ପଛକୁ କରି ସେ ଝୁଲିବାକୁ ଲାଗିଲା କିଛି ସମୟ । ତା'ପରେ ହାଉ ହାଉ କରି ଝୁଣା ଧୂଆଁ ତକ ଖାଇବାକୁ ଲାଗିଲା । ଧଇଁସଇଁ ହେଇ ନିଃଶ୍ୱାସ ନେଉଥିଲା ଆଉ ଛାଡୁଥିଲା । ତା' ଛାତି ଖାଲି ଉଠୁଥିଲା ଓ ପଡୁଥିଲା । ଦେଖଣାହାରୀ ଆଚମ୍ବିତ, ହତଚକିତ । ସେଇ ଭିଡ଼ ଭିତରୁ ଜଣେ ବରିଷ୍ଠ ମହିଳା ଚିଲେଇ ଉଠି କହିଲା- ଆଲୋ

ଆଲୋ ଚାହିଁଛ କ'ଣ ବା ! ମା' ପ୍ରସନ୍ନ ହେଲେ ଲୋ ! ମା' ପ୍ରସନ୍ନ ହେଲେ ! କୌଶଲ୍ୟା ଦେହରେ ମା' ମଙ୍ଗଳା ବିଜେ ହେଲେ । ଶଙ୍ଖ ହୁଳହୁଳି ଦିଅ । ମାଆଙ୍କୁ ଚୁଆ ଚନ୍ଦନ ଦିଅ । ସିନ୍ଦୁର କଜ୍ଜ୍ୱଳ ଦିଅ । ପଣାପାଣି ଦିଅ ।

ତା' ଘୋଷଣା ସରିଛି କି ନାହିଁ, ମାଆମଙ୍ଗଳାଙ୍କ ଗଳାରୁ ମନ୍ଦାର ମାଳାଟିଏ ନେଇ ଆଉଜଣେ ମହିଳା କୌଶଲ୍ୟା ଗଳାରେ ଲମ୍ୱେଇ ଦେଲା । ଆଉ ଜଣେ ବୋଳିଦେଲା ମୁଠାଏ ସିନ୍ଦୂର । ପଛକୁ ପଛ ଦେହରେ ମୁଣ୍ଡରେ କୁଢ଼େଇ ହୋଇ ପଡୁଥିଲା ଦୁବ ଅରୁଆ ଚାଉଳ, ଫୁଲ ଚନ୍ଦନ ଆହୁରି କେତେ କ'ଣ । ସେଥିକି ତା'ର ନିଘା ନଥିଲା । ସିଏ ଖାଲି ହାଉ ହାଉ କରି ଝୁଣା ଧୂଆଁ ପିଇଯାଉଥିଲା । ଆଗକୁ ପଛକୁ ଝୁଲି ହୁଁ ହୁଁ ହେଉଥିଲା ।

ସମବେତ ମହିଳା ଭିତରୁ କେହି ଭୟରେ ଥରୁଥିଲେ ତ କେହି କେହି ଭକ୍ତିରେ ବିଗଳିତ ହୋଇ ପଡୁଥିଲେ । ଦୁଇ ତିନି ଜଣ ମହିଳା ତା' ଆଗରେ ସାଷ୍ଟାଙ୍ଗ ପ୍ରଣିପାତ କରୁଥିବାର ଦେଖାଗଲା ।

ଏଣିକି ଚୈତ୍ର ନୁହେଁ କି ଭାଦ୍ରବ ନୁହେଁ, ବର୍ଷର ପ୍ରତି ମଙ୍ଗଳବାର କାନୁଗୋଇ ଘର ଆଗରେ ଭିଡ଼ ଜମିଲା । ହାତରେ ପୂଜା ସାମଗ୍ରୀ ଧରି, ଲୋକେ କୌଶଲ୍ୟା ପାଖକୁ ଆସିଲେ । କାମନା ପୂର୍ତ୍ତି ପାଇଁ ମାନସିକ କରି ଗୁଆ ବସାଇଲେ ।

କେବଳ ଗାଁ ନୁହେଁ ପାଖାପାଖି ଦଶଖଣ୍ଡି ମଉଜାରେ ରାଷ୍ଟ୍ର ହୋଇଗଲା ।

କାନୁଗୋଇ ଘର ବୋହୂକୁ କାଳିସୀ ଲାଗୁଛି । ମାଆ ମଙ୍ଗଳା ବିଜେ ହେଉଛନ୍ତି । ଅପୁତ୍ରିକକୁ ପୁତ୍ର ଦାନ କରୁଛନ୍ତି ତ ଅନ୍ଧକୁ ଚକ୍ଷୁ ଦାନ କରୁଛନ୍ତି । ନିର୍ଦ୍ଧନକୁ ଧନ ଦେଉଛନ୍ତି ।

କୌଶଲ୍ୟା ଆଉ ନିଜ କଥା ଚିନ୍ତା କରି ଅସ୍ଥିର ହେଉନାହିଁ । ନିଜ ବ୍ୟର୍ଥ ନାରୀତ୍ୱ ପାଇଁ ତା'ର ଆଉ ଅବସୋସ କିମ୍ୱା ଅବସାଦ ନାହିଁ । ଏକ ଅହେତୁକ ମାତୃତ୍ୱର ଅନୁଭବ ତା' ହୃଦୟକୁ ବିସ୍ତାରିତ କରିଦେଇଛି । ସେ ଆଉ କୌଶଲ୍ୟା ନୁହେଁ କି କାନୁଗୋଇ ଘର ବୋହୂ ନୁହେଁ, ସେ ସମସ୍ତଙ୍କର ମାଆ । ଅଗଣିତ ଜନତାଙ୍କ ମାଆ ମାଆ ସମ୍ୱୋଧନରେ ସେ ଉଲ୍ଲସି ଉଠୁଛି । ବିମୋହିତ ହୋଇପଡୁଛି । ତା' ସନ୍ତାନମାନଙ୍କ ମଙ୍ଗଳ ପାଇଁ ସେ ହଳଦୀ, ସିନ୍ଦୂର ବୋଳି ହେଇ, କଳା ଶାଢ଼ୀ ପିନ୍ଧି, ବେକରେ ମନ୍ଦାର ମାଳା ପକାଇ ନାଚୁଚି, ଗାଉଚି, ଆଉ ଗାଁ ଦାଣ୍ଡରେ ଟହଟହ ହେଇ ହସୁଛି ।



# ନିୟତି

ରୁଟି ଆଉ ତା'ର ଅତି ପ୍ରିୟ ଆଳୁ ବାଇଗଣ, କଞ୍ଚା କଦଳୀ ଓ ମାଟିଆଳୁର ସନ୍ତୁଳା ସେଦିନ ତାକୁ ଏକଦମ୍ ଫିକା ଫିକା ଲାଗିଲା । ତାକୁ ଆଦୌ ଖାଇବାକୁ ଇଚ୍ଛା ହେଉନଥିଲା । ଦେହ ଚୋଇ ଯାଉଥିଲା ଓ ବାନ୍ତି ବାନ୍ତି ବି ଲାଗୁଥିଲା । ଅନ୍ୟଦିନ ହୋଇଥିଲେ ସେ ଥାଳିପାଖରୁ ଉଠି ଚାଲିଯାଇଥାନ୍ତା । କିନ୍ତୁ ଆଜି ସେ ଜାଣିଶୁଣି ଗଲାନାହିଁ । ତା'ର ଅନ୍ତର୍ଦହନ ବୋଉକୁ ଦେଖେଇବାକୁ ଚାହୁଁ ନଥିଲା ଆଦୌ । ନିର୍ଲିପ୍ତ ଭାବରେ ରୁଟି ଓ ସନ୍ତୁଳାକୁ ପାଟିରେ ପକେଇ ଚାର୍ଲି ଚାପ୍‌ଲିନ୍ ଯୋତାଖଣ୍ଡ ଗିଳିଲା ପରି ଗିଳିଯାଉଥିଲା । ତା' ସହ ତା' ବତିଶି ବର୍ଷର ବେକାର ଜୀବନର ତିକ୍ତତାକୁ, ଅନିଶ୍ଚିତ ଭବିଷ୍ୟତର ନିବିଡ଼ ଅନ୍ଧାରକୁ ଓ ତା' ଚାକିରି ଉପରେ ଭରସା କରି ଗଡ଼ିଯାଉଥିବା ବୟସକୁ ଲିପ୍‌ଷ୍ଟିକ୍ ଓ ଫେସ୍‌ପ୍ୟାକ୍‌ରେ ଲୁଚେଇବାକୁ ଚେଷ୍ଟା କରୁଥିବା ତା' ବଡ଼ଭଉଣୀର ସ୍ୱପ୍ନଭଙ୍ଗର ଯନ୍ତ୍ରଣାକୁ, ପେନ୍‌ସନ୍ ପଇସାରେ ଘର ଚଳେଇବାକୁ ଅସମର୍ଥ ଥିବା ତା' ବାପର ଅସହାୟତାକୁ ଗଳାଧିତ କରିଦେଉଥିଲା । ସମସ୍ତଙ୍କର ତା' ଉପରୁ ଭରସା ତୁଟିଥିଲେ ସୁଦ୍ଧା ବୋଉ ତଥାପି ଆଶା ବାନ୍ଧିଥିଲା । ତା' ପୁଅ ଚାକିରି କରିବ । ପଇସା ରୋଜଗାର କରିବ । ଭଉଣୀ ଦୁଇଟାଙ୍କର ବାହାଘର କରିବ । ବାପାର ଔଷଧପତ୍ର ନିୟମିତ କିଣିବ । ଘର ଚଳେଇବ । ଘରକୁ ସୁନାନାକୀ ବୋହୂ ଆଣିବ ।

ବୋଉର ସେଇ କ୍ଷୀଣ ଆଶା ହିଁ ଏ ପର୍ଯ୍ୟନ୍ତ ସୁବୋଧକୁ ଇଣ୍ଟରଭ୍ୟୁ ପରେ ଇଣ୍ଟରଭ୍ୟୁ ଦେବା ପାଇଁ ଉତ୍‌ପ୍ରେରିତ କରୁଥିଲା । ଚିହ୍ନା ଅଚିହ୍ନା ଅଧ ଚିହ୍ନା ସମସ୍ତଙ୍କ ପାଖରେ ମୁଣ୍ଡ ନୁଆଁଇ ଚାକିରି ଖଣ୍ଡେ ପାଇଁ ଅନୁରୋଧ କରୁଥିଲା । ପରିବାର ପାଇଁ ଯେକୌଣସି କାମ କରିବାକୁ ସେ ପ୍ରସ୍ତୁତ ଥିଲା, କିନ୍ତୁ ତାକୁ କାମ ମିଳୁନଥିଲା । ତା' ଏମ୍‌ଏ ପଢ଼ାର ବିଶ୍ୱବିଦ୍ୟାଳୟ ସାର୍ଟିଫିକେଟ୍ ଚାକିରୀ ପାଇଁ ବେଶି ହୋଇଯାଉଥିଲା ଓ ଆଉ କେଉଁଠି ସକଳ ଯୋଗ୍ୟତା ଥାଇ ବି ବ୍ୟାକିଙ୍ଗ୍ ଅଭାବରୁ ସେ ଅଯୋଗ୍ୟ ବିବେଚିତ ହେଉଥିଲା । ତଥାପି ସେ ଧୈର୍ଯ୍ୟ ହରାଇ ନଥିଲା । ସେ ଜଳଖିଆ ଖାଇବାକୁ ଭୁଲିଯାଉଥିଲା । ମୁଣ୍ଡରେ ତେଲ ଲଗାଇବାକୁ ଭୁଲି ଯାଉଥିଲା । ଦାଢ଼ୀ କାଟିବାକୁ ଭୁଲି ଯାଉଥିଲା, ପ୍ୟାଣ୍ଟ ସାର୍ଟ ସଫା କରିବାକୁ ଭୁଲି ଯାଉଥିଲା, ଛନ୍ଦା ଚୌଧୁରୀକୁ ମନେପକେଇବାକୁ ଭୁଲି ଯାଉଥିଲା ସିନା ପ୍ରତିଦିନ ନକୁଳ ଚା' ଦୋକାନକୁ ଯାଇ ଚା' କପେ ପିଇବା ବାହାନାରେ

ଖବରକାଗଜର ଚାକିରୀ ବିଜ୍ଞାପନ ଦେଖିବାକୁ ଭୁଲୁ ନଥିଲା । ଆର୍‌ଆଇ ଅମିନ ଟ୍ରେନିଂ ପାଖରୁ ଖବର କାଗଜର ଏଜେଣ୍ଟ ଆବଶ୍ୟକ ପର୍ଯ୍ୟନ୍ତ, ସେ ଲାଗି ପଡ଼ିଥିଲା ।

ଛନ୍ଦା ଚୌଧୁରୀର ବାପା ମାଆ ତା' ବାହାଘର ପାଇଁ ବ୍ୟସ୍ତ ହେଉଛନ୍ତି ଓ ତା' ପାଇଁ ବାରମ୍ବାର ଆସୁଥିବା ବାହାଘର ପ୍ରସ୍ତାବକୁ ଆଉ କେତେଦିନ ପର୍ଯ୍ୟନ୍ତ ଆଳ ଦେଖେଇ ସେ ପ୍ରତ୍ୟାଖ୍ୟାନ କରିବାର ପ୍ରଶ୍ନକୁ ସେ ନିର୍ବିକାର ଭାବରେ ହଜମ କରି ଚାଲିଥିଲା । ତିନି ହଜାର ଟଙ୍କା ଦରମାରେ ଚାକିରି କରୁଥିବା ତା' ବସ୍‌ର ବ୍ୟବହାର ତାକୁ ଆଦୌ ଭଲ ଲାଗୁ ନଥିଲା ଓ ସେ ତା' ଚାକିରୀ ଛାଡ଼ି ଦେବାପାଇଁ ଯେତେବେଳେ ଜିଦ୍ ଧରି ବସିଲା, ସୁବୋଧ ଛନ୍ଦାକୁ ଆଶ୍ୱାସନା ଦେଲା ଓ କହିଲା ଆଉ ଅଳ୍ପଦିନ ଅପେକ୍ଷା କର । ତମକୁ ଆଉ ଆଦୌ ଚାକିରୀ କରିବାକୁ ପଡ଼ିବନି କି ସେ ବୁଢ଼ା ଧେଡ଼ କଥାରେ ଉଠ୍‌ବସ୍ ହେବନି । ମୋର ଏ ଭିତରେ ନିଶ୍ଚୟ ଚାକିରୀଟା ହେଇଯିବ ।

କ୍ରମଶଃ ବୟସର ଚାପକୁ ବହନ କରୁଥିବା ଛନ୍ଦାର ଆଖିତଳ କଳା ଦାଗ ବିଚଳିତ କରିଦେଉଥିଲା ସୁବୋଧକୁ । ଗୋଟାଏ ଅସ୍ଥିର ଅନୁଭବ ତାକୁ ଦିନସାରା କାବୁ କରି ରଖିଥିଲା । କିଛି ଗୋଟାଏ କରିବାକୁ ହେବ । ଚାକିରୀ ନ ହେଲା ନାହିଁ, ବେପାର ବଣିଜ ।

ବ୍ୟାଙ୍କ୍ ଅଫିସର ମଡ୍‌ଗେଜ୍ ମାଗିଲେ । ଋଣ ପରିଶୋଧ କରିବାର ଗୋଟାଏ ନିର୍ଭର ପ୍ରତିଶ୍ରୁତି । ପୈତୃକ ସମ୍ପତ୍ତି କହିଲେ ଗୋଟାଏ ଅନାମଧେୟ ଗାଁରେ ମାଟିକାନ୍ଥ ଓ ଚାଳ ଛପର ଥିବା ଦୁଇ ବଖରା ଘର । ସବୁ ବର୍ଷ ଘର ଛାଉଣୀ ନ ହୋଇପାରିବାରୁ କାନ୍ଥ ସବୁ ଆବଡ଼ାଖାବଡ଼ା । ଏଠି ସହରରେ ଭଡ଼ା ଘର ଦୁଇ ବଖରା, ସମ୍ବଳ ନାହିଁ, ବ୍ୟାଙ୍କ୍‌ବାଲା ରାସ୍ତା ଦେଖେଇଲେ । ପ୍ରଧାନମନ୍ତ୍ରୀ ସ୍ୱରୋଜଗାର ଯୋଜନା ମଡ୍‌ଗେଜ୍ ଆବଶ୍ୟକ ନାହିଁ । ଶିଳ୍ପ ଅଧିକାରୀ ପରିଚିତ, ଭଲ ଲୋକ । ସୁବୋଧ ଚେଷ୍ଟା କଲା । ଆଠଦିନ ଝାଳନାଳ ହେଇ ଡକ୍ୟୁମେଣ୍ଟ ରେଡି କଲା, ଇଣ୍ଟରଭ୍ୟୁରେ ବସିଲା । ଗୋଟାଏ କୁଜିନେତାଙ୍କୁ ହାତ କରିଥିଲା । ତା' ପଛରେ ପଚାଶ ଶହେ ଖର୍ଚ୍ଚ ବି କରିଥିଲା । କିଛି ହେଲା ନାହିଁ । ମନ୍ତ୍ରୀଙ୍କ ସୁପାରିଶ ପ୍ରାର୍ଥୀ ପାଇଲେ ତ ସରକାରୀ ଅଫିସରଙ୍କ ପକେଟ ଗରମ କରିଥିବା ପ୍ରାର୍ଥୀମାନେ ପାଇଲେ । ଦୁଇଟିଯାକର ଆବଶ୍ୟକତା ପୂରଣ ପାଇଁ ସୁବୋଧ ଅଯୋଗ୍ୟ ଥିଲା ।

ସୁବୋଧ ଆଉ ଚେଷ୍ଟା କରି ନଥିଲା ।

ସୁବୋଧକୁ ଅନ୍ୟମନସ୍କ ଦେଖି ବୋଉ ପୁଣି କହିଲା-

ମୁଁ କ'ଣ ପଚାରୁଛି ପରା !

ସୁବୋଧ ସେମିତି ରୁଟି ଖଣ୍ଡେ ଛିଡ଼ଉ ଛିଡ଼ଉ କହିଲା- କ'ଣ କହ ?

କହୁଛି ପରା- ତୁ ପଲ୍ଲବୀ ପାଇକରାୟକୁ ଦେଖିଛୁ କି ନାହିଁ । ତା' ବାପ ପ୍ରସ୍ତାବ ପଠେଇଛି, ଝିଅଟା ପୋଲିସ୍ ଚାକିରି କରିଛି । ଭଲ ଦରମା ପାଉଚି । ତା' ବାପ ବି ଭଲ ଦବାନବା କରିବ ।

ପାଟିକୁ ନେଉଥିବା ସନ୍ତୁଳାମିଶା ରୁଟି ଖଣ୍ଡକ ଅଟକିଗଲା । ସେ ବୋଉ ମୁହଁକୁ ଚାହିଁଲା । ଯଦିଓ ସେ ଚାହାଣୀରେ ଅଭିମାନ ନଥିଲା ଅଭିଯୋଗ ନଥିଲା କି ଅସନ୍ତୋଷ ବି ନଥିଲା ତଥାପି ବୋଉ ଶଙ୍କିଗଲା । ତା' ଦୁଇ ଆଖିରୁ ଢଳଢ଼ଳ ହେଇ ନିଗିଡ଼ି ପଡ଼ିବାକୁ ରାସ୍ତା ଖୋଜୁଥିବା ଦୁଇଧାର ଲୁହକୁ ଲୁଚାଇବା ପାଇଁ ସେ ପାଣି ଗ୍ଲାସ୍ ବାହାନାରେ ରୋଷେଇ ଘରକୁ ଚାଲିଗଲା ଓ ପୂର୍ବରୁ ଗ୍ଲାସେ ପାଣି ଥୋଇଥିବା ସତ୍ତ୍ୱେ ପୁଣି ଗ୍ଲାସେ ପାଣି ଆଣି ତା ଥାଳି ପାଖରେ ରଖିଲା ।

ସୁବୋଧ ପୁଣି ଖାଇବାରେ ମନଦେଲା । ଯେମିତି ବୋଉ ତାକୁ କିଛି କହିନି । ସେ କିଛି ଶୁଣିନି, ପଲ୍ଲବୀ ପାଇକରାୟ ବୋଲି ସେଇ ନାକଚେପେଟୀ କାଳି ଓ ଦାନ୍ତୁରୀ ପୋଲିସ୍ କନେଷ୍ଟବଳ ଯାହାର ହାତଗୋଡ଼ ମିଶି ପଳେ ମାଉଁସ ବି ହେବନି, ବାଉଁଶ କଣି ପରି ନକ୍‌ନକ୍ ଚେହେରା ଉପରେ ବେଢ଼ଙ୍ଗଣିଆ ଦିଶୁଥିବା ଖାକି ପୋଷାକ ପିନ୍ଧି ସ୍କୁଟି ଚଲାଉଥାଏ, ତାକୁ ବି କେବେ ଦେଖିନି । ଦୀର୍ଘ ଛଅ ବର୍ଷ ହେଲା ତା' ରକ୍ତରେ ମାଂସରେ ଅସ୍ଥିମଜ୍ଜାରେ ସମଗ୍ର ସ୍ନାୟୁସତ୍ତାରେ ଅଖଣ୍ଡ ଆଧିପତ୍ୟ ବିସ୍ତାର କରିଥିବା ଛନ୍ଦା ବୋଲି ଝିଅଟା, ଯାହାର ଗଭୀର ନୀଳହ୍ରଦ ପରି ଦୁଇ ସମର୍ପିତ ଆଖିକୁ ଚାହିଁଦେଲେ ସୁବୋଧ ନିଜର ବ୍ୟର୍ଥ ଜୀବନର ସବୁ ବ୍ୟଥା ବେଦନାକୁ ମୁହୂର୍ତ୍ତକ ପାଇଁ ଭୁଲିଯାଏ । ସିଏ ବି ଯେମିତି କେବେ ବି ତା' ଜୀବନକୁ ଆସିନାହିଁ ।

ତା' ଜୀବନରେ ଛନ୍ଦାର ଅନୁପ୍ରବେଶ ବୋଉକୁ ଅମାଲୁମ୍ ନଥିଲା, ବେଳେବେଳେ ଛନ୍ଦାଭଳି ସୁନାନାକୀ ବୋହୂ ଭାଗ୍ୟରେ ଥିଲେ ମିଳେ ଓ ସେ ଛନ୍ଦାକୁ ହିଁ ବୋହୂ କରି ଆଣିବ ବୋଲି କହିହେଉଥିଲା । ସୁବୋଧ ବୋଉର ଚପଳାମିରେ ଗଭୀର ଆତ୍ମସନ୍ତୋଷ ଅନୁଭବ କରୁଥିଲା ।

ଛନ୍ଦା ଚୌଧୁରୀକୁ ବୋହୂ କରିବା କଥା କହିବା ବେଳେ ବୋଉ ଯେମିତି କିଶୋରୀ ସୁଲଭ ଉଚ୍ଛାଟପଣରେ ଉବୁଟୁବୁ ହେଉଯାଉଥିଲା । ପଲ୍ଲବୀ ପାଇକରାୟ ନାଁ ଉଚ୍ଚାରଣ କଲାବେଳେ ସେଥିରୁ କାଣିଚାଏ ବି ଅନୁଭବ କରିପାରିଲା ନାହିଁ ସୁବୋଧ । ବରଂ ଯୁଦ୍ଧ ପରବର୍ତ୍ତୀ ଗୋଟାଏ ପରାଜିତ ସୈନିକ ପରି ସେ ଅସ୍ୱାଭାବିକ ଭାବେ ଗମ୍ଭୀର ହୋଇଯାଇଥିଲା ।

ଆଜିକାଲି ବାପାଙ୍କ ସହ ପ୍ରାୟ ମୁହାଁମୁହିଁ ହୁଏ ନାହିଁ ସୁବୋଧ । ବାପା ସିଧାସଳଖ କିଛି କହନ୍ତି ନାହିଁ । ସେ ମନେ ପକାଇବାକୁ ଚେଷ୍ଟା କଲା ବାପାଙ୍କ ସହ ଶେଷଥର ପାଇଁ ସେ କେବେ କଥା ହେଇଥିଲା । ହିରୋହୋଣ୍ଡା ଗାଡ଼ିଟିଏ ପାଇଁ ଯେଉଁଦିନ ଡଲି ଅପାର ବାହାଘର ଭାଙ୍ଗିଲା ସେଇଦିନର କଥା । ସେ ପ୍ରସ୍ତାବ ଦେଇଥିଲା ପ୍ରସ୍ତାବ ତ ନୁହେଁ ଏକରକମ୍ ଜିଦ୍ କରିଥିଲା, ଗାଁ ଘର ବିକି ଟଙ୍କା ଆଣିଲେ ସେ କିଛି ଗୋଟାଏ କରନ୍ତା । ତେଣିକି ଭଉଣୀ ଦୁଇଟାଙ୍କର ବାହାଘର ଆଉ ସମସ୍ୟା ହେଇ ରହନ୍ତା ନାହିଁ । ଚାକିରୀ ବାକିରୀର ତ ଆଉ ଆଶାନାହିଁ ।

ବାପା ହଠାତ୍ ଚିହିଁକି ଉଠି କହିଥିଲେ-

କୁଳାଙ୍ଗାର । ସେଇ ସେତକ ଆମର ସମ୍ବଳ, ତୁ କ'ଣ ଆମକୁ ଗଛତଳେ ରଖି ଭିକ ମଗେଇଲେ ଶାନ୍ତି ପାଇବୁ ? ସେଦିନର ବାପାଙ୍କର ସେ ଉଗ୍ରମୂର୍ତ୍ତି ଏ ପର୍ଯ୍ୟନ୍ତ ବି ସୁବୋଧର ହୃଦୟରେ ଛାପହେଇ ରହିଯାଇଛି ।

ସୁବୋଧକୁ ନିଦ ହେଉ ନଥିଲା । ଛାତକୁ ଚାହିଁ ଚିତ୍‌ହେଇ ସେ ଶୋଇଥିଲା । ଆଜ୍‌ବେଷ୍ଟସ ଛାତ ଉପରୁ ଦୁଇ ତିନିଟା ମୂଷା ଧଡ୍ ଧଡ୍ ହେଇ ଧାଇଁ ଚାଲିଗଲେ । ଦୁଇଟା ମଶା ବାରମ୍ବାର ତା' ବାଁ ଗାଲ ଉପରେ ବସି ତାକୁ ଅତିଷ୍ଠ କରୁଥିଲେ ମଶାରୀ ବନ୍ଧାହେବା ସତ୍ତ୍ୱେ । ସେ ଉଠି ବସିଲା । ଆଣ୍ଠେଇପଡ଼ି ଚଟ୍ ଚଟ୍ ତାଳିମାରି ମଶା ଦୁଇଟାଙ୍କୁ ମାରିବାର ନିଷ୍ଫଳ ପ୍ରୟାସ କଲା । ବିରକ୍ତ ହେଇ ବାହାରକୁ ଆସି ଖୁବ୍ ଜୋର୍‌ରେ ମଶାରୀଟାକୁ ଝାଡ଼ିଦେଲା ଓ ପୁଣିଥରେ ଶେଯ ଚାରିପଟେ ଗୁଞ୍ଜିଦେଇ ଶୋଇବାକୁ ଚେଷ୍ଟା କଲା ।

ଛନ୍ଦା ଚୌଧୁରୀର ମୁହଁଟା ବେଶି ବେଶି ମନେପଡ଼ିଲା । କ'ଣ କରୁଥିବ ଛନ୍ଦା ? ମିସ୍‌ଡ୍ କଲ୍‌ଟିଏ କରନ୍ତା ନାଇଁ ? ନିଜେ ମୋବାଇଲ୍ ଉଠେଇଲା । ବଟନ୍ ଅନ୍ କଲା । ଟୁଂ ଟୁଂ ଆୱାଜ୍ । ପୁଣି ଚେଷ୍ଟା କଲା, ସେଇ ଟୁଂ ଟୁଂ ଟୁଂ, ବାଲାନ୍ସ ଚେକ୍ କଲା । ତିରିଶ ପଇସା ଅଛି । ବିରକ୍ତିରେ ଗୋଟାଏ କୋଣକୁ ଫିଙ୍ଗିଦେଲା ମୋବାଇଲ୍‌ଟା ।

ଅନେକ ଦିନ ହେଲା ଛନ୍ଦା ସହ ଭେଟ ହେଇନି । ଭେଟ ହେଇନି ନୁହେଁ । ସେ ଭେଟିବାକୁ ସାହସ କରିପାରିନି । ଛନ୍ଦାର ସେଇ ଗୋଟାଏ କଥା, ଘରେ ବାଧ କରୁଛନ୍ତି ବାହାଘର ପାଇଁ । କେତେ ଦିନ ଆଉ କି ଆଳ ଦେଖେଇବି ? ଅନ୍ତତଃ ତମ ଘରୁ ଯଦି ପ୍ରସ୍ତାବଟା ଆସନ୍ତା ମୁଁ ଆଉ କିଛିଦିନ ଟାଳି ଦିଅନ୍ତି ।

କିଛି ଉତ୍ତର ଦିଏନାହିଁ ସୁବୋଧ । ଦେଇପାରେ ନାହିଁ । ଘରେ ଦୁଇ ଦୁଇଟା ଭଉଣୀ । ତା' ବାହାଘର କଥା କିଏ ଉଠେଇବ ? ଶେଷରେ ସେୟା ହିଁ ହେଲା । ଭଉଣୀମାନଙ୍କ କଥା ଛାଡ଼ି ତା' ବାହାଘର କଥା ଉଠିଲା ।

ସେ ଶୋଇବାକୁ ଚେଷ୍ଟା କଲା । ଆଖି ବନ୍ଦ କଲା । ନିଦର ଗୋଟାଏ ପତଳା ଆସ୍ତରଣ ତାକୁ ଆବୋରି ଆସୁଥିଲା । ସେଇ ତନ୍ଦ୍ରାଳସରେ ସେ ଅନୁଭବ କଲା କେହି ଜଣେ ତା' ମଶାରୀ ଟେକି ଭିତରକୁ ପଶୁଛି । ତା କ୍ଳାନ୍ତ କପାଳ ଉପରେ ପାପୁଲି ସ୍ପର୍ଶ ଦେଉଛି । ଠିକ୍ ଛନ୍ଦାପରି । ସେଇ ପାପୁଲି ଉପରେ ସୁବୋଧ ପାପୁଲି ରଖି ଚମକି ପଡୁଛି । ନା-ଛନ୍ଦା ପାପୁଲିର ସ୍ନିଗ୍ଧତାରୁ ରତିଏ ବି ନାହିଁ । ବରଂ ଗୋଟାଏ ରାଡୁଆ କର୍କଶ ଶିରାଳ ପାପୁଲିଟିଏ । ଏଁ ଛନ୍ଦା ନା ତାର କଙ୍କାଳ ?

ଧୀରେ ଧୀରେ ସେ ଆଖି ଖୋଲିଲା । ବସିଛି ଛନ୍ଦା । ଆରେ ! ଛନ୍ଦାର ଆଜି ଇୟେ କି ବେଶ ? ଖାକି ରଙ୍ଗର ଶାଢ଼ୀଟେ କାହିଁକି ପିନ୍ଧିଛି ? ମୁଣ୍ଡରେ ପୁଣି ହାତେ ଲମ୍ବର ଓଢ଼ଣା । ସୁବୋଧ ଡାହାଣ ହାତରେ ତା' ମୁହଁର ଓଢ଼ଣାଟା ଟିକେ ଆଡ଼େଇ ଦେଇ ଏତେ

ଜୋରରେ ଡରିଗଲା ଯେ ପାଟିରୁ କଥା ବାହାରିଲା ନାହିଁ । ଓଢ଼ଣା ତଳେ ଛନ୍ଦାର ମୁହଁ ନଥିଲା । ପଲ୍ଲବୀ ପାଇକରାୟ ତା'ର ତେଢ଼ାମେଢ଼ା ଦାନ୍ତ ଦେଖେଇ ହସୁଥିଲା ଟହଟହ । ସେଇ ବିଭତ୍ସ ହସରେ ଫାଟି ପଡୁଥିଲା କୋଠରୀ । ଅଣଚାଷ ପବନର ତାନ ଥିଲା ସେ ହସରେ । ଅସ୍ଥିର ହୋଇପଡ଼ିଲା ସୁବୋଧ । ତାକୁ ସ୍ପଷ୍ଟ ଦିଶୁଥିଲା ସେଇ ପାପୁଲି ସହ ତା'ର ଆଉ ଗୋଟାଏ ପାପୁଲି ମିଶିଗଲା ଓ ସେ ଦୁଇଟିଯାକ ମାଡ଼ି ଆସୁଥିଲା ତା' ଗଳା ଆଡ଼କୁ । ଗୋଟାଏ ଅବ୍ୟକ୍ତ ଯନ୍ତ୍ରଣାରେ ସେ ଶିହରି ଉଠିଲା । ତା' ନିଦ ଭାଙ୍ଗିଗଲା । ସେ ହୁ କିନା ଉଠି ବସିଲା । କୋଠରୀଟା ସାରା ନିଶୂନ୍ । ଶିଲିଂ ଫ୍ୟାନ୍‌ର ଧଡର୍ ଧଡର୍ ଶବ୍ଦ କୋଠରୀ ଭିତରେ ଗୋଟାଏ ଭୌତିକ ପରିବେଶ ସୃଷ୍ଟି କରୁଥିଲା । ତା' ଶରୀର ଗୋଟାଏ ଅଜଣା ଆତଙ୍କରେ ପ୍ରକମ୍ପିତ ହେଉଥିଲା । ସେ ଅନୁଭବ କଲା ତା' ଦେହରେ ଗୋଟାଏ ଶ୍ରମର ଝାଳ । ତା' ତଣ୍ଟି ଅଠା ଅଠା ହେଇଗଲା । ମଶାରି ଟେକି ନଇଁପଡ଼ି ଖଟତଳୁ ପାଣି ବୋତଲଟା ଉଠେଇ ନେଇ ଢକ୍ ଢକ୍ କରି ଅଧବୋତଲ ପାଣି ପିଇଗଲା ।

ଆରଘରୁ ବାପାଙ୍କର ଖୁଁ ଖୁଁ କାଶ ଶୁଭୁଥିଲା । 'ପାଣି ଦେବି ?' ନିଦ ମଳମଳ ଆଖିରେ ବୋଉ କହିଲା । 'ନା ଥାଉ' । ବାପାଙ୍କର କଣ୍ଠସ୍ୱର, ସେମିତି କାଶୁ କାଶୁ ବାପା ପୁଣି କହିଲେ । ସୁବୋଧକୁ କହିଲ ? ସେ କ'ଣ କହିଲା ?

ବୋଉ ଚୁପ୍ ରହିଲା ।

ବାପା ସ୍ୱରଟାକୁ ଆଉଟିକେ ଉଚ୍ଚ କରି କହିଲେ- ତୁମକୁ ବାରମ୍ବାର କହିଲି ପିଲାଟାକୁ ଟିକେ ବୁଝେଇ ଦେବାକୁ, ତମ ଦ୍ୱାରା ହେଲାନାହିଁ । ପଲ୍ଲବୀ ବାପା ତିନି ଲକ୍ଷ ଟଙ୍କା ଦେବ । ସେଇଥିରେ ଡଲିର ବାହାଘର ହୋଇଯିବ । ଝିଅଟା ଚାକିରୀ କରିଛି । ଇୟେ ତ କୋଉ କୂଳକୁ ହେଲାନାହିଁ । ଆଉ ଉପାୟ କ'ଣ ଅଛି ? ପୁଅ ଜନ୍ମ କରିଥିଲି କ'ଣ ମୋ ପେନ୍‌ସନ୍ ପଇସାରେ ପୋଷିବାକୁ ?

ବୋଉ ହତାଶା ସ୍ୱରରେ କହିଲା- ଆସ୍ତେ କୁହ । ସେ ଘରେ ଶୋଇଛି । ଆଉ ବର୍ଷେ ଛ'ମାସ ଅପେକ୍ଷା କଲେ ହୁଅନ୍ତାନି ?

କ'ଣ ତମ ପୁଅର ଲଟେରୀଟିଏ ଫୁଟିବ ନା ହାତୀ ସୁନା କଳସ ତା' ମୁଣ୍ଡରେ ଢାଳିବ ? କି ଆଶା ଭରସାରେ ମୁଁ ଏ ପ୍ରସ୍ତାବଟା ହାତଛଡ଼ା କରିବି ? ତମେ ମାଆ ପୁଅ ମୋତେ ସହଯୋଗ ନ କଲେ ମୁଁ ନିଜେ ପାଇକରାୟ ବାବୁଙ୍କ ସହ କଥା ହେବି । ବାପାଙ୍କ କଣ୍ଠରେ ବିରକ୍ତିବୋଧ ।

ଆଉ କିଛି ଶୁଣିବାର ଆଗ୍ରହ ସୁବୋଧର ନଥିଲା । ସେ ମୁଣ୍ଡତଳୁ ତକିଆଟାକୁ ଉଠେଇ ଦୁଇ କାନ ପାଖରେ ଜଡ଼େଇ ଧରିଲା ଓ ସେମିତି ଗଡ଼ିପଡ଼ିଲା ବିଛଣାରେ ।

ଶେଷରେ ବାପାଙ୍କର ଇଚ୍ଛା ହିଁ କାର୍ଯ୍ୟକାରୀ ହେଲା ।

ପଲ୍ଲବୀ ପାଇକରାୟ ବୋହୂ ହୋଇ ସୁବୋଧ ପରିବାରକୁ ଆସିଲା ।

ପଲ୍ଲବୀ ଖାକୀ ପୋଷାକରେ ଯେମିତି ବେଢ଼ଙ୍ଗଣିଆ ଲାଗୁଥିଲା, ନାଲି ଶାଢ଼ୀ ପିନ୍ଧି, ଟୋପିଦିଆ ମୁଣ୍ଡରେ ଶାଢ଼ୀ ଅଞ୍ଚଳ ଓଢ଼ଣା ଦେବା ପରେ ସେମିତି ଲାଗୁ ନଥିଲା। ବାହାଘର ଆଗରୁ ଫେସିଆଲ୍ କରିଥିଲା। କଲର୍‌ଟା ସେତେ ଜଣାପଡୁ ନଥିଲା। ସୁନ୍ଦର ଭାବରେ ଆଇ ବ୍ରୁ ସେପ୍ କରିଥିଲା। ଚାହିଁଥିଲେ ସେ ଦାନ୍ତଗୁଡ଼ାକ ମଧ ଟିକେ ସେପ୍ କରିପାରିଥାନ୍ତା। ସେତକ କଲାନି କାହିଁକି କେଜାଣି ? କିନ୍ତୁ ଗୋଟାଏ ପ୍ରକାର ଲାଗୁଥିଲା।

କନେଷ୍ଟବଳ ପଲ୍ଲବୀ ପାଇକରାୟ ଏବେ ନବବଧୂ।

ତା' ଚାଲିଚଳଣ, ଆଚାର ବ୍ୟବହାର ଓ କଥାବାର୍ତ୍ତାରେ ନବବଧୂ ସୁଲଭ ମଧୁରତା ଓ କୋମଳତା ଫୁଟେଇବା ପାଇଁ ଚେଷ୍ଟା କରୁଥିଲା। ଘରେ ପାଦ ଦେଉ ଦେଉ ସମସ୍ତଙ୍କ ପାଇଁ ଆପଣାପଣିଆର ଭାବ ବିସ୍ତାରି ଦେଉଥିଲା।

ଘରେ ନୂଆ ନୂଆ ଆସବାବପତ୍ର ଭର୍ତ୍ତି ହେଇଯାଇଥିଲା। ତଥାପି ଛନ୍ଦା ଚୌଧୁରୀର ସ୍ଥାନ ନେଇପାରୁ ନଥିଲା ପଲ୍ଲବୀ। ଯୌତୁକ ସାମଗ୍ରୀ ଦେଖି ଇର୍ଷାକାତର ହେଉଥିବା ଆତ୍ମୀୟସ୍ୱଜନ ବନ୍ଧୁ କୁଟୁମ୍ବ ସାହି ପଡ଼ିଶା ବୋହୂକୁ ଦେଖି ମୁହଁ ମୋଡ଼ିଦେଇ କହୁଥିଲେ- ହଁ- ପଇସା ଗଛ ତ। ଘର ଭର୍ତ୍ତି ଜାନିଯୌତୁକ। ବୋହୂର ରଙ୍ଗଢ଼ଙ୍ଗ ଠେଇଁ କ'ଣ ଅଛି ? ପଇସାରେ କଳା ରଙ୍ଗ ଧଳା ହେଇଯିବ। ସବୁ ବେଢ଼ଙ୍ଗ ଢ଼ଙ୍ଗର ଦିଶିବ।

ଡଲିଜଲିଙ୍କ ମୁହଁରେ ସରାଗ ନଥିଲେ ବି ହତାଦର କରୁନଥିଲେ ଭାଉଜକୁ।

ବାପାଙ୍କ ପ୍ରତିକ୍ରିୟା ଜଣାପଡୁ ନଥିଲା।

ବୋଉ ଆଖି ସଦାସର୍ବଦା ଢ଼ଳଢ଼ଳ ହେଉଥିଲା, ଟିକିଏ ସୁଯୋଗ ପାଇଲେ କାନ୍ଧ ଉପରକୁ କାନିଟା ଖସେଇ ଦୁଇ ଆଖି ପୋଛି ପକାଉଥିଲା ଓ ସେଇ କାନିଟାକୁ ପୁଣି ମୁହଁସାରା ବୁଲେଇ ଆଣି କାନ୍ଧରେ ପକେଇ ଦେଉଥିଲା।

ସୁବୋଧ ଦାରୁଭୂତ ମୁରାରି ପାଲଟି ସାରିଥିଲା।

ଧୋବା ଭଣ୍ଡାରୀ ଜ୍ୟୋତିଷ ବ୍ରାହ୍ମଣଙ୍କୁ ଡାକିବା ପାଖରୁ ବରଯାତ୍ରୀ ଓ ମଧୁଶଯ୍ୟା ଗୃହ ସାଜସଜ୍ଜା ପର୍ଯ୍ୟନ୍ତ ସବୁକାର୍ଯ୍ୟ ନିର୍ବିକାର ଭାବରେ କରିଯାଉଥିଲା ଯନ୍ତ୍ରମଣିଷଟିଏ ପରି।

ବାହାଘର ପର୍ବ ସରିଲା। କୁଣିଆ ମୈତ୍ର ବିଦା ହେଇଗଲେଣି। ପଲ୍ଲବୀର ଛୁଟି ପୂରିଲାଣି। ସେ ଆଜି ପ୍ରଥମ ଥାନାକୁ ଯିବ। ପଲ୍ଲବୀ ବାପା ପୂର୍ବଦିନରୁ ତା' ପୁରୁଣା ସ୍କୁଟି ଖଣ୍ଡକ ଦେଇଯାଇଛନ୍ତି।

ପଲ୍ଲବୀ ବେଶ ପୋଷାକ ବଦଳେଇଲା। ଶାଢ଼ୀ ଛାଡ଼ି ଖାକି ଓ୍ୱର୍ଦ୍ଦି ପିନ୍ଧିଲା। ମୁଣ୍ଡରେ ଟୋପି ଦେଲା।

ସୁବୋଧ ଉଦ୍ଦେଶ୍ୟରେ ବୋଉ କହିଲା - ଆଜି ପ୍ରଥମ ଦିନଟା। ସେ ଏଠୁ ଏକୁଟିଆ ଯିବ କେମିତି ? ତୁ ତାକୁ ନେଇଯା, ଛାଡ଼ିଦେଇ ଆସିବୁ।

ସୁବୋଧ ବୋଉ କଥା ମାନିଲା ।

ପଲ୍ଲବୀ ଶାଶୁ ଶ୍ୱଶୁର ଓ ବଡ଼ ନଣନ୍ଦଙ୍କୁ ମୁଣ୍ଡିଆ ମାରିଲା । ସାନ ନଣନ୍ଦ ଗାଲରେ ଟିକେ ହାତ ମାରିଦେଇ ଏରୁଣ୍ଡି ଡେଇଁଲା । ଆଗରେ ଥିଲା ସୁବୋଧ । ଗାଡି ଷ୍ଟାର୍ଟ କରିବା ପାଇଁ କିକ୍ ଦେଲା ।

ଆଜ୍ଞ ଚିଠି ।

ସୁବୋଧ ଦୁଇ ହାତରେ ସ୍କୁଟିର ହ୍ୟାଣ୍ଡେଲ୍ ଧରିଥିବା ଅବସ୍ଥାରେ ମୁହଁ ଟେକି ଚାହିଁଲା ।

ପଲ୍ଲବୀ ସେତେବେଳକୁ ଏରୁଣ୍ଡି ଡେଇଁ ସୁବୋଧ ପାଖକୁ ଆସିସାରିଥିଲା ।

ପୋଷ୍ଟମ୍ୟାନ୍ ହାତରୁ ଖାକି କଭରଟା ଆଣି ସୁବୋଧ ହାତକୁ ବଢ଼େଇ ଦେଲା ।

ବାପା ବୋଉ ଡଲି ଓ ଜଲି ସମସ୍ତେ ଠିଆ ହୋଇଥିଲେ ଅଗଣାରେ । ଉତ୍ସୁକ ହେଇ ଚାହିଁ ରହିଲେ ସୁବୋଧ ଭାଇ ଲଫାପାକୁ ।

ସୁବୋଧ ସ୍କୁଟିରେ ଷ୍ଟାଣ୍ଡ ଦେଇ ଲଫାପା ଖୋଲିଲା ।

ନିଯୁକ୍ତି ପତ୍ର । ଷ୍ଟେଟ୍ ବ୍ୟାଙ୍କର କ୍ଲର୍କ । ବର୍ଷେ ତଳେ ପରୀକ୍ଷା ଦେଇଥିଲା ସୁବୋଧ । ଚିଠିଟା ପଢୁ ପଢୁ ଟପ୍ ଟପ୍ ହେଇ ଦୁଇଧାର ଲୁହ ନିଗିଡ଼ି ପଡ଼ିଲା ସୁବୋଧର । ଚକିତ ହେଲେ ସମସ୍ତେ । କି ସନ୍ଦେଶ ଅଛି ଚିଠିରେ ? ସୁବୋଧ ଆଖିରେ ଲୁହ ? ନିଜକୁ ସମ୍ଭାଳି ପାରିଲା ନାହିଁ ଜଲି ।

ଦୌଡ଼ିଗଲା ଭାଇ ପାଖକୁ । ସୁବୋଧ ବଢ଼େଇଦେଲା ଲଫାପା ସହ ଚିଠିଟି ତା ହାତକୁ । ଭୟ ବିଜଡ଼ିତ ହୋଇ କମ୍ପିତ ହସ୍ତରେ ଜଲି ଚିଠି ନେଇ ପଢ଼ିଲା ।

ଆମୂଳଚୂଳ ଚିଠିଟି ଉପରେ ନଜର ପକେଇ ସାରି ବିସ୍ଫୋରଣଟିଏ କଲା ପରି କହିଲା- ଭାଇ ବ୍ୟାଙ୍କ୍‌ରେ ଚାକିରୀ ପାଇଯାଇଛି ।

ସ୍ତବ୍ଧ ହୋଇଗଲେ ସମସ୍ତେ ।

ବାପା କହିଲେ- ବୋହୂଟା ମୋର ଲକ୍ଷ୍ମୀ । ସେ ଘରକୁ ଆସିବାରୁ ତୋର ଚାକିରୀ ହେଲା । ବୋଉ କ'ଣ କହିବାକୁ ଯାଇ ଅଟକି ଗଲା ଓ ଏକାମୁହାଁ ହୋଇ ଘର ଭିତରକୁ ଚାଲିଗଲା ।

ଡଲି ଓ ଜଲି ଉଭୟ ପାଟିକରି କହୁଥିଲେ- ଆଜି ସନ୍ଧ୍ୟାବେଳକୁ ପାର୍ଟି ଦବୁ ଭାଇ ।

ସୁବୋଧ ସମ୍ପୂର୍ଣ୍ଣ ପ୍ରତିକ୍ରିୟାହୀନ ହୋଇ ପଡ଼ିଥିଲା । ତା' ପାଟିରୁ ବାକ୍ୟ ସ୍ଫୁରୁ ନଥିଲା । କେବଳ ଇଙ୍ଗିତରେ ପଲ୍ଲବୀକୁ ଗାଡ଼ିରେ ବସିବାକୁ କହିଲା ଓ ଗାଡ଼ି ଷ୍ଟାର୍ଟ କଲା ।



# ବାଂଝନୀ

ଡୁଲା, ବାଉଁଶିଆ, ଗୁଲି, ଚାଙ୍ଗୁଡ଼ା, ପରଡ଼ା, ବିଞ୍ଚଣା ସବୁ ତା ହାତରେ ସୁନ୍ଦର ଭାବରେ ଉତୁରୁଥିଲା । ଗାଁରେ ଯେତେ ସ୍ତ୍ରୀ ପୁରୁଷ ବାଉଁଶ ତିଆରି କାମ କରୁଥିଲେ, ତା' ହାତ ତିଆରି ଜିନିଷ ପାଖରେ ଫିକା ପଡ଼ିଯାଉଥିଲେ । ସେଇଥିପାଇଁ ତା' ମାଲ୍‌ର ଚାହିଦା ଥିଲା ବେଶି । ତାଠୁଁ ଥରେ ଯିଏ ଗୁଲିଟିଏ କି ଚାଙ୍ଗଡ଼ାଟିଏ କିଣୁଥିଲା ସେ ଆଉ କାହା ଦରବ ଛୁଁ ନଥିଲା, ତା ଆଇଲା ବାଟକୁ ଅନେଇ ବସୁଥିଲା, ବେପାରୁଣୀମାନେ ତା ଜିନିଷ ଟଣାଓଟରା କରି ନେଇଯାଉଥିଲେ । କେତେବେଳେ ସିଏ ରାଗି ଯାଉଥିଲା ତ ଆଉ କେତେବେଳେ ହସି ହସି ଗଡ଼ି ଯାଉଥିଲା ଆଉ କହୁଥିଲା ।

'କାଇଟା ରସ୍ ଆଛେ ସନମତିର ଚାଙ୍ଗଡ଼ାଥାନେ ?'

ସେଇ ସନ୍‌ମତି ଜାନୀ, ପଦଲାମ୍ ଜାନୀର ସ୍ତ୍ରୀ, କୁଶିଆ ଜାନୀର ବୋହୂ । ସେ ବୁଲୁଥିଲା ହାଟକୁ ହାଟ । ଗାଁରୁ ଗାଁ । ରଙ୍ଗବେରଙ୍ଗର ଭଳିକିଭଳି ଗୁଲି ଚାଙ୍ଗଡ଼ା ଛନ୍ଦି ବିରାଟ ବୋଝଟିଏ କରୁଥିଲା, ସେଗୁଡ଼ିକୁ ନିଜେ ମୁଣ୍ଡରେ ବୋହି ଆଗେ ଆଗେ ବାଟ ଚାଲୁଥିଲା । ବାହୁଙ୍ଗୀ ଗୋଟାକରେ କାଉଡ଼ି କରି ପଦଲାମ୍ ତାକୁ ଅନୁସରଣ କରୁଥିଲା, ତା' କାଉଡ଼ିରେ ଝୁଲୁଥିଲା ଦୁଇଟା ଟୋକେଇ, ଧାନମାଣ୍ଡିଆ, ବିରି, କୋଳଥ, କାନ୍ଦୁଲ, ମହୁଲ କେତେ ନା କେତେ ଦରବ ମିଳୁଥିଲା । ପଦଲାମ୍ ସେ ସବୁ ବୋହି ବୋହି ଘରକୁ ଆଣୁଥିଲା ।

ସନମତିର କଥା ତଳେ ପକେଇ ଦେଉ ନଥିଲା ପଦଲାମ୍ । ମୁହଁ ଅନ୍ଧାରରୁ ବଣକୁ ଯାଇ ଭଲ ବାଉଁଶ ଆଣୁଥିଲା, ତାକୁ ଖଣ୍ଡ ଖଣ୍ଡ କରି ପାତିଆ ତିଆରି କରୁଥିଲା । ତା' ବୁଢ଼ା ବାପ ତାକୁ ଏଥିରେ ସାହାଯ୍ୟ କରୁଥିଲା । ସନମତି ଚୁଲିରେ ଗୋଟିଏ ବଡ଼ ହାଣ୍ଡି ବସାଉଥିଲା । ସେଇ ମାଟି ହାଣ୍ଡିରେ ହରିଡ଼ା ଛେଚି ଗୁଣ୍ଡ କରି ରଖୁଥିଲା ଓ ତା' ସହ ବାଉଁଶ ପାତିଆକୁ ମିଶେଇ ସିଝଉଥିଲା, ଭଲକରି ସିଝିଗଲା ପରେ ଚାଷ ଜମିରୁ ତାଡ଼ି ଆଣିଥିବା ମାଟିକୁ ପାଣିରେ ଗୋଳେଇ ସେଥିରେ ମିଶଉଥିଲା । ଆଉ କିଛି ମାଟି ତା' ଉପରେ ଦେଇ ଦୁଇ ତିନି ଦିନ ଛାଡ଼ି ଦେଉଥିଲା । ପୁଣି ସେଗୁଡ଼ିକ ଧୋଇ ଖରାରେ ଶୁଖାଇ ରଖୁଥିଲା । ସେଇ ଶୁଖିଲା ବାଉଁଶ ପାତିଆରେ ଭଳିକିଭଳି ଜିନିଷ ତିଆରି କରୁଥିଲା । ସକାଳୁ ସଞ୍ଜ ଯାଏ ଅଣନିଃଶ୍ୱାସୀ ହୋଇ କାମରେ ଲାଗିଥାଏ ସନ୍‌ମତି । ପଦଲାମ୍ ଏତେ ଖଟେ ନାହିଁ, ପିଣ୍ଡାରେ ବସିଥାଏ । ଧୂଙ୍ଗିଆ ଖାଉଥାଏ । ଅଥବା ପିକା ଟାଣୁଥାଏ ଆଉ

ସନମତିର ଆଦେଶକୁ ଅପେକ୍ଷା କରିଥାଏ । ପରିବାରର ସବୁ ଦାୟିତ୍ୱ ସନମତିର । ସିଏ ଯେମିତି ଏ ଘରର ମାଲିକାଣୀ ଆଉ ପଦଲାମ୍ ଗୋତି ।

ବସ୍ତିର ଅନ୍ୟ ପୁରୁଷଙ୍କ ଭଳି ପଦଲାମ୍ ସବୁଦିନେ ଭାଟିକି ଯାଉ ନଥିଲା କି ସନମତିକୁ ମରାପିଟା ଗାଳି ଫଜିତ୍ କରୁନଥିଲା । ସନ୍‌ମତି ଯୋଉଦିନ ସାଉକାର ଘରେ ସଂଗ୍ରହ କରିଥିବା ଧାନ ମାଣ୍ଡିଆ ଆଦି ଦେଇ ପଇସା ଆଣିଥାଏ, ସେଇଦିନ ପଦଲାମ୍ ସନମତି ପାଖରୁ ପଇସା ନେଇ ବଜାରରୁ ଅଧକିଲେ ମାଉଁସ କିମ୍ୱା କୁକୁଡ଼ାଟିଏ ଆଣୁଥିଲା । ଫେରିଲା ବେଳେ ଦୁଇ ତିନି ଗ୍ଲାସ୍ ମଦ ଆଣୁଥିଲା । ସନ୍‌ମତି ଲଙ୍କା ପିଆଜ ହଳଦୀ ମସଲା ଦେଇ ରାନ୍ଧୁଥିଲା । ଦୁହେଁ ମିଶି ସେଇ ମଦ ମାଉଁସର ଭୋଜି କରୁଥିଲେ ଓ ପାଖ ବଖରାରେ ଥିବା ବୁଢ଼ା ବାପକୁ ସେଥିରୁ ଭାଗ ଦେଉଥିଲେ ।

ସେଇ ହଜିଲା ଦିନଗୁଡ଼ାକ ହେଜି ହେଉଥିଲା ସନମତି । ସେଦିନର ପଦଲାମ୍‌ର ରୂପ ଚେହେରା ଆଜି ନାହିଁ । ମୁଗୁନିପଥର ପରି ନିଦା ଦେହରୁ ଯେମିତି ତା'ର କଳା ନିଗୁଡୁଥିଲା । ବଳିଲା ବଳିଲା ଦେହରେ ମାଉଁସ ଖୁନ୍ଦି ହେଉଥିଲେ । ତା' ମୁଣ୍ଡରେ ମେଞ୍ଚାଏ କୁଞ୍ଚୁକୁଞ୍ଚିଆ ବାଳ ସେମିତି ଅଛି ହେଲେ ସେଥିରେ ତେଲ ଟିକିଏ ବାଜୁନି ଏବେ । ଗାଲ ପଶି ଠାକରା ହେଲାଣି । ଛାତି ହାଡ଼ ଦିଶିଲାଣି, ପିନ୍ଧୁଛି ମଇଳା କୋଟଟ ଛିଣ୍ଡା ଲେଙ୍ଗଡ଼ା । ସେତେବେଳେ ସନମତି ମାଛି ବସେଇ ଦେଉ ନଥିଲା ତା' ଦେହରେ । ଜନମ କଳା ଛୁଆକୁ ସେବା କଲାଭଳି ସେ ତା ସେବା କରୁଥିଲା । ତା' ମୁଣ୍ଡରେ ତେଲ ମଖେଇ ଦେଉଥିଲା । ଘଷିମାଜି ଗାଧେଇ ଦେଉଥିଲା । ଖାଇବା ପିଇବା ବୁଝୁଥିଲା । ତା' ମନ ମରିଗଲା ଯେତେବେଳେ ସିଏ ଭାବିଲା ସିଏ ଆଉ ପଦଲାମ୍‌ର କେହି ନୁହେଁ । ତାକୁ ଦେଖିଲେ ସେ ଟିଙ୍ଗ୍‌ଟିଙ୍ଗ୍ ହେଉଛି । ଭଲରେ କଥାପଦେ ହେଉନି କି ମୁହଁ ଟେକି ଚାହୁଁନି । ହଉ ତା' ମୁଣ୍ଡ ନୁଖୁରା । ତା' ଲୁଙ୍ଗି ଆଉ ଜାମାରେ ବହଳେ ମଇଳା ଜମୁ । ତା' ଆଖିକାନ ପଶିଯାଉ । ଯେମିତି କାମ କରିଛି ସେମିତି ଫଳ ପାଉ । ମନେ ମନେ କଠୋର ହୋଇ ପଡ଼ିଲା ସନମତି ।

ଘର କଥା ବୁଝୁ ନଥିଲା ପଦଲାମ୍ । ବୁଝୁନଥିଲା ନୁହେଁ, ବୁଝିପାରିଲା ଭଳି ବୁଦ୍ଧି ଅକଲ ତା'ର ନଥିଲା । ପଇସା ହିସାବ ବି ଠିକ୍‌ରେ ରଖିପାରୁ ନଥିଲା, ସବୁ କରୁଥିଲା ସନମତି । ମୁଠା ମୁଠା ପଇସା ଗାଞ୍ଜିଆଟିରେ ଭରି ପେଟତଳେ ଖୋସି ଦେଉଥିଲା । ମୁହେଁ ମୁହେଁ ଶହ ଶହ ଟଙ୍କାର ହିସାବ ଯେତେବେଳେ ସନମତି କରୁଥିଲା ଆଁଟା କରି ତା' ମୁହଁକୁ ଚାହିଁ ରହୁଥିଲା ପଦଲାମ୍ । ସତରେ ସନମତିଟା ଭାରି ଚାଲାକ । କୋଉ ଗୁଣରେ ତାକୁ କେହି ବାଛି ପାରିବେ ନାହିଁ । ରୂପରେ ଯେମିତି ଗୁଣରେ ବି ସେମିତି । ଗୋରା ତକ୍‌ତକ୍ ପାଚିଲା ଆମ୍ୱ ପରି ରଙ୍ଗ, ଲମ୍ୱା ଚଉଡ଼ା ଡେଙ୍ଗା ମଣିଷଟା । ମୁଣ୍ଡରେ ଗୁଳି ଚାଙ୍ଗଡ଼ା ମୁଣ୍ଡେଇ ରାସ୍ତାରେ ହାତୀ ଚାଲିଲା ପରି ଚାଲେ । କାହାକୁ ଡରେ ନାଇଁ କି କୋଉଠି ସାଙ୍କୁଡ଼ି ଯାଏ ନାହିଁ । ନବାବ ପିଲାକୁ ଜବାବ ଦିଏ । ତଥାପି ପଦଲାମ୍‌ର ମନ

ଊଣା ହୋଇଯାଏ । ସନମତି ବାଂଝନୀ । ତା'ର ପିଲା ଛୁଆଁ ନାହିଁ । ବଅଁଶ ଆଗକୁ ବଢ଼ିବାର ନାଇଁ । ଏଇଠୁ କ'ଣ ଜାନୀ ବଅଁଶ ଛିଡ଼ିଯିବ ? ବାପବୁଢ଼ା ଧୂଙ୍ଗିଆ ମଲୁ ମଲୁ ପିଣ୍ଡାରେ ବସି ଅନେକଥର କହିସାରିଲାଣି ଆଉ ଗୋଟାଏ ବାହାହେବା ପାଇଁ । ବଅଁଶ ଆଗକୁ ବଢ଼େଇବା ପାଇଁ । ସାହସ ହୁଏ ନାହିଁ ପଦଲାମ୍‌ର । ସନମତି ପାଖରେ ଭାରି ଦୁର୍ବଳ ହୋଇପଡ଼େ । ତା' ତଣ୍ଟି ଅଠା ଅଠା ହୋଇଯାଏ । ଛାତି ଧଡ଼୍‌ଧଡ଼୍ କରେ । ସନମତି ନ ଚାହିଁଲେ ସେ କିଛି କରିପାରିବ ନାହିଁ । ମାଇଜୀଟିଏ ଆଣିବାକୁ ହେଲେ ଅତି କମ୍‌ରେ ଜଲା ବାବଦକୁ ଦୁଇ ହଜାର ଟଙ୍କା ଦେବାକୁ ହେବ । ମଦପାଣି ଭୋଜିଭାତ ଖର୍ଚ୍ଚକୁ ଛାଡ଼ । ଏତେ ପଇସା ସେ କୋଉଠୁ ଆଣିବ ? ସବୁ ପଇସା ତ ସନମତି ପାଖରେ । ସିଏ ତା' କଳ୍ପନାକୁ ରୂପ ଦେଇପାରେ ନାହିଁ । ବୁଢ଼ାବାପାର ବିଷ୍ଟାପ ମନକୁ ସାନ୍ତ୍ୱନା ଦେଇପାରେ ନାହିଁ । ତୁନି ପଡ଼େ । ମନ ଭିତରର ଅଶାନ୍ତ ଝଡ଼କୁ ସାମୟିକ ଶାନ୍ତ କରିବାକୁ ଭାଟି ଆଡ଼କୁ ଗଡ଼ିଯାଏ । ସାଉକାର ପାଖରେ ନେହୁରା ନିଉଛାଳି ହୋଇ ଦୁଇ ଗ୍ଲାସ୍ ପିଇଦିଏ । ସାଉକାର ଲୋକ ପଠେଇ ସନମତି ପାଖରୁ ପଇସା ଆଦାୟ କରେ । ସନମତି ବି ଛାଡ଼ିବା ଲୋକ ନୁହେଁ । ସାଉକାର ଲୋକଙ୍କୁ ଦୁଇପଦ ନ ଶୁଣେଇ ଛାଡ଼େ ନାହିଁ । ପଦଲାମ୍‌କୁ ମନଇଛା ଗାଳିଦିଏ । ମାଇଜୀ ପଇସାରେ ପିଉଛୁ ବୋଲି ତା' ପୌରୁଷକୁ ଧିକ୍କାର କରେ । ସେ ମୁଣ୍ଡପୋତି ପିଣ୍ଡାରେ ବସି ସବୁ ଶୁଣେ । ଉଁ କି ଚୁଁ କିଛି କୁହେନାହିଁ । ଦିନକୁ ଦିନ ପଦଲାମ୍‌ର ଏ ଅଭ୍ୟାସ ବଢ଼ି ଚାଲିଲା । ଟଳଟଳ ପାଦରେ ସେ ଘରକୁ ଫେରିଆସିଲା । ସନମତି ବିରକ୍ତ ହେଇ ତାକୁ ବି ଓଲଟା ସିଧା କହିବାକୁ ଆରମ୍ଭ କରିଦେଲା । ସେଇ ମଦ ନିଶାରେ ଦିନେ ରୋକ୍‌ଠୋକ୍ କହିଲା ପଦଲାମ୍ 'ତୁଇ ବାଂଝନୀ, ତତେ ଛାଡ଼ିବି । ଆଉରି ଗୋଟେ ମାଇଜୀ ଆଣିବି ।'

ଚିହିଁକି ଉଠିଲା ସନମତି । ଏଇ ତା'ହେଲେ ତା ମନର ଭାଷା । ଏଇଥିପାଇଁ ଏତେ ରଙ୍ଗ ବାହାର କରୁଛି ? ସନମତିର ପିତ୍ତ ଚଢ଼ିଗଲା । ତମ୍ ତମ୍ ହୋଇ ଚୁଲ୍ଲୀମୁଣ୍ଡରୁ ପଦଲାମ୍ ପାଖକୁ ଧାଇଁ ଆସୁଥିଲା । କ'ଣ ଭାବିଲା କେଜାଣି ? ସେମିତି ନଥିକରି ବସିପଡ଼ିଲା ପିଣ୍ଡାକୁ ଆଉଜି । ପଦଲାମ୍ ସତ କହିଛି । ସେ ବାଂଝ୍‌ନୀ । ତା'ର ପିଲା ଟୋକୀ ନାହାନ୍ତି । ସିଏ କାହାକୁ ଦୋଷ ଦେବ । ପଦଲାମ ଆଉ ଗୋଟାଏ ମାଇଜୀ ଆଣିଲେ ତା'ର କିଛି କରିବାର ନାଇଁ । ସିଏ ଅଫଳନ୍ତି ଗଛ । ଜାନୀ ବଅଁଶ ଆଗକୁ ବଢ଼େଇବାର ତାକତ ତାର ନାହିଁ । ସିଏ ଅଖୋଜ ଅଲୋଡ଼ା । ତା' ମାଇଜୀ ଜନମ ତୁଚ୍ଛ । ଭିତରେ ଭିତରେ ସିଏ ପୂରାପୁରି ବିଗଳିତ ହୋଇଗଲା । ନରମି ଗଲା ତା' ଓଠର ଭାଷା, ଦିନଟା ସାରା ଗୁମ୍‌ସୁମ୍ ରହିଲା । ନିଗିଡ଼ି ଆସୁଥିବା ଲୁହକୁ ପିଇଗଲା ।

ପଦଲାମ୍‌ର ନିଶା ଛାଡ଼ିଲା । ସିଏ ପୁଣି ବଣକୁ ଗଲା । ବାଉଁଶ କାଟି ଆଣିଲା । ବାପ ପୁଅ ଦୁହେଁ କଟୁରୀ ଦାଢ଼ରେ ଖଣ୍ଡ ଖଣ୍ଡ କଲେ । ପାତିଆ ପାତିଆ କରି ସନମତିକୁ

ଦେଲେ । ସନମତି ସେଗୁଡ଼ିକୁ ରଙ୍ଗ କରି ଖରାରେ ଶୁଖାଇଲା । ଦିନରାତି ଏକା କରି ଗୁଲି ଚାଙ୍ଗଡ଼ା ବୁଣିଲା । ପଦଲାମ୍ ଓ ଶ୍ୱଶୁର ବୁଢ଼ା ପାଇଁ ରାନ୍ଧିଲା ବାଢ଼ିଲା । ଘରଦ୍ୱାର ସଫା କଲା । ହାଣ୍ଡି ହାଣ୍ଡି ଲୁଗା ସିଝେଇଲା । ତାକୁ ମୁଣ୍ଡରେ ବୋହି ନଦୀ ତୁଠକୁ ନେଇ କାଚି ଆଣିଲା । ପଦଲାମ୍ ନୁଖୁରା ମୁଣ୍ଡରେ ଜଡ଼ାତେଲ ମାଖିଲା । ବାସନା ସାବୁନ ଲଗେଇ ଗାଧେଇଲା । ଦେହମୁଣ୍ଡ ଚିକ୍କଣ କରି ଗୁଲି ଚାଙ୍ଗଡ଼ା ବୋଝ ମୁଣ୍ଡେଇଲା । ହାଟ ହାଟ ବୁଲିଲା । ଗାଁ ଗାଁ ବୁଲିଲା । ପଛେ ପଛେ ଗୋଡି ପରି କାଉଡ଼ି କାନ୍ଧେଇ ଚାଲିଲା ପଦଲାମ୍ । ଗାଁ ଦାଣ୍ଡରେ ପାଟିକରି ଡାକିଲା-

ଗୁଲି ଚାଙ୍ଗଡ଼ାମନ୍ ଘେନିବାସ୍ କି ନିନି !

ଗୁଲି ଚାଙ୍ଗଡ଼ା ମନ୍...

ଏ ବର୍ଷ ଶୀତ କାକର ସହିପାରିଲା ନାହିଁ ବୁଢ଼ା ଜାନୀ, ମଂଜ ଥରିଲା । କଫ କାଶ ରୁନ୍ଧି ଦେଲା । ଆଠଦିନ କାଳ ତଣ୍ଟିରେ କିଛି ଗଳିଲା ନାହିଁ । ମାଣ୍ଡିଆ ପେଜ ଟିକେ ବି ଢୋକିଲା ନାହିଁ ବୁଢ଼ା । ମଲାବେଳକୁ କେତେ ବିକଳ ହୋଇ ପୁଅବୋହୂଙ୍କୁ କହିଲା- ଜାନୀ ବଉଁଶ ଏଇଠୁ ବୁଡ଼େଇବନିରେ ! ଆଗକୁ ବଢ଼େଇବ, ବାପ ଗୋସାପ ପତରପାଣି ପାଇବେ ।

ବୁଢ଼ା ଚାଲିଗଲା, ସନମତି ବୁଢ଼ାର କଥାକୁ ହେଜିଲା, ଜୀବନର ଅଧା ଚାଲିଗଲା । ସେ ଖାଲି ଘରକରଣାରେ ମାତିଥିଲା । ପେଟପାଟଣା ପାଇଁ ଧାଇଁ ଥିଲା । ଅସଲ କଥାରେ ଧ୍ୟାନ ଦେଇ ନଥିଲା । ବୁଢ଼ାର କାମ ସରୁ ସିଏ ଦିଶାରୀ ଗୁଣିଆ ଦେଖେଇବ । ପାଙ୍ଗିଣୀ ବସେଇବ । ପିଲାଟିଏ ହେଲେ ପେଣ୍ଡ୍ରାଣୀ ମନ୍ଦିରରେ ମେଣ୍ଢାବଳି ଦବ ବୋଲି ମାନସିକଟାଏ ବି କରିପକେଇଲା । ସେଥିରେ ଯଦି କିଛି ନ ହେଲା ପଦଲାମ୍ ସାଙ୍ଗରେ ନବରଙ୍ଗପୁର ଡାକ୍ତର ପାଖକୁ ଯିବ । ତଥାପି ମହାପୁରୁ ଯଦି ତାକୁ ନିରାଶ କଲେ ସେ ପଦଲାମ୍‌କୁ ଆଉ ଗୋଟାଏ ମାଇଜୀ ଆଣିବାକୁ କହିବ । ତେଣିକି ତା' ଭାଗ୍ୟରେ ଯାହା ଥିବ ହେବ । ଶ୍ୱଶୁର ବୁଢ଼ା କଥା ରଖିବ । ଜାନୀ ବଅଁଶ ବୁଡ଼ାଇବାକୁ ଦେବନାହିଁ । ମନକଥା ମନରେ ରଖିଲା ସନମତି ।

ଶ୍ୱଶୁର ବୁଢ଼ାର ଦଶକାମ ପାଇଁ ଅଣ୍ଟା ଭିଡ଼ିଲା, ଗୁଲି ଚାଙ୍ଗଡ଼ା ବିକି ଚାରି ହଜାର ଟଙ୍କା ମାଙ୍କଡ଼ମୁଠି କରି ରଖିଥିଲା ସନମତି । ପଦଲାମ୍ ତାର ଟେର ପାଇ ନଥିଲା । ଶାବଳରେ ଦି ଭୂଷା ଦେଇ ମାଟିତଳୁ ସରାଗାତ ବାହାର କରି ଆଣିଲା । ଆଠଖଣ୍ଡ ପାଞ୍ଚଶହ ଟଙ୍କିଆ ନୋଟ୍ ପଦଲାମ୍ ହାତରେ ଗୁଞ୍ଜି ଦେଇ କହିଲା- ନେ ! ତୋ ବାପର କ୍ରିୟା କରମ ଭଲ ଭାବରେ କର । ଭୋଜିଭାତ ମଦ ମାଉଁସ କୋଉଥିରେ ଊଣା କରିବୁ ନାଇଁ । ଦଶାଘର ଦିନ ସରାଗୁଡ଼ାରୁ ନାଟ ଆଣିବୁ । ଦୁଇ ହଜାର ଟଙ୍କା ପଡ଼ିବ । ଦିଶାରୀ ଗୁଣିଆ କଥା ବୁଝିବୁ ।

କେବେ ପଇସାପତ୍ର କାରବାର କରି ନଥିବା ପଦଲାମ୍ ଘାବରେଇ ଗଲା । ଏକାବେଳେକେ ଚାରି ହଜାର । ବାପ୍‌ରେ ! ପଦଲାମ୍‌କୁ ଚଉଦ ଭୂବନ ଦିଶିଲା । ସିଏ

ପିଣ୍ଡାକୁ ଆଉଜି କିଛି ସମୟ ଘୁମ୍ ଖାଇ ବସିଗଲା । ଓଁ କି ଚୁଁ କିଛି କହିଲା ନାହିଁ । ସନମତି ଯେତେ ଯାହା ପଚାରିଲେ ଜବାବ୍ ଦେଲାନାହିଁ । ସେ ଚୁପ୍ ରହିଲା । ବାପଟାକୁ ହରେଇଚି । ମନ ଭଲ ନାଇଁ ତ । ସେଇ ଦୁଃଖରେ ଲୋକଟା ଏମିତି ଗୁମ୍‌ମାରି ବସିଛି । ବସିଥାଉ । ଦଣ୍ଡେ ବସିଲେ ତା' ମନ ଠିକ୍ ହେଇଯିବ ।

ସନମତି ତା' କାମରେ ମନଦେଲା । ଦଶାଘର କାମ । ଗୋବରରେ ହରିଡା ଗୁଣ୍ଡ ମିଶେଇ ଘର ଲିପିଲା । ଦୁଇ ହାଣ୍ଡି ଲୁଗା ବତୁରେଇଲା । ମୁଣ୍ଡରେ ମୁଣ୍ଡେଇ ନଦୀ ଆଡ଼କୁ ଗଲା ।

ପଦଲାମ୍ ସନମତିର ଗୋଡ଼କୁ ଚାହିଁ ବସିଥିଲା । ସିଏ ଚାଲିଗଲା ପରେ ଅଣ୍ଟାର ପଇସାତକ ବାହାର କରି ଚଟାଣରେ ଥୋଇଲା । ତାକୁ ସମାନ ଦୁଇ ଭାଗ କରିଦେଲା । ଗୋଟାଏ ଭାଗ ଅଣ୍ଟାରେ ଗୁଞ୍ଜିଲା । ଆର ଭାଗକୁ ଜରି ଗୋଟାକରେ ଗୁଡ଼େଇ ଚାଳରେ ଖୋସିଦେଲା ।

ଦଶାକାମ ସୁରୁଖୁରୁରେ କଲା ପଦଲାମ୍ । ବନ୍ଧୁ କୁଟୁମ୍ବ ଗାଁ ଲୋକ ଭୋଜିଭାତ ମଦ ମାଉଁସ ଖାଇଲେ । ରାତିରେ ନାଟ ହବ । ଉଚ୍ଚାଟ ହୋଇ ଚାହିଁ ରହିଲେ ସମସ୍ତେ । ରାତି ଘଡ଼ିଏ ହେଲା । ପଦଲାମ୍ ମୁହଁ ଶୁଖେଇ କହିଲା-

ନାଟଦଳ ଆସିବେ ନାଇଁ । ଦୂର ଗାଁ ଯାଇଛନ୍ତି । ଛି'ଛାକର କଲେ କୁଟୁମ୍ବ ଲୋକ, ପୁଅ ଗୋଟେ ବୁଢ଼ା ଜନମ କରିଥିଲା ଯେ ତା ଦଶାଘରେ ନାଟ ଖଣ୍ଡେ କଲାନାଇଁ । ଛି, ଛି, ଲାଜର କଥା ।

ଦଶାଘର ଯିବାର ଦୁଇଦିନ ନ ଯାଉଣୁ ଘରଛାଡ଼ି କେବେ କୁଆଡ଼କୁ ଯାଉନଥିବା ଲୋକଟା ଦିନେ ହଠାତ୍ ଅନ୍ତର୍ଦ୍ଧାନ ହୋଇଗଲା । ସନମତି ଖୋଜି ହେଲା । ହାଟ ବଜାର, ବସ୍‌ଷ୍ଟାଣ୍ଡ, ମଦଭାଟି ସବୁଠି, କାହିଁ କୋଉଠି ପତ୍ତା ମିଳିଲାନି ତା'ର । ତା' ଫେରିବା ବାଟକୁ ଅନେଇ ରହିଲା ସନମତି । ଦିନେ ଗଲା, ଦୁଇଦିନ ଗଲା, ତିନିଦିନ ଗଲା, ଚାରିଦିନ ଗଲା । ସୁରୁଯ ଦେବତା ଢଳିଲେ । ସଂଜ ହେଲା । ଚାରିଆଡ଼ କିଟି କିଟି ଅନ୍ଧାର । ମୁହଁକୁ ମୁହଁ ଦିଶୁନି । ସମସ୍ତଙ୍କ ଘରେ ତାଟି କବାଟ ପଡ଼ିଲାଣି । ଡିବିରିଟିଏ ଜାଳିଦେଇ ସନମତି ବସିଛି । ରାତି ବଢ଼ିଲା । ବାହାରେ ଶୂନଶାନ୍, କେତେ ଆଉ ବସିରହିବ ? ସେଇଠି କାନି ପାରି ଗଡ଼ିପଡ଼ିଲା । ଦାଣ୍ଡରେ ବୁଲାକୁକୁରଟାର ଭାଉ ଭାଉ ଶବ୍ଦରେ ସନମତିର ନିଦ ଭାଙ୍ଗିଲା । ସେ କାନ ପାରିଲା । କାହାର ପାଦ ଶବ୍ଦ ଶୁଭୁଛି । ତାରି ଦୁଆର ମୁହଁରେ ନୀରବ ହେଲା ଶବ୍ଦ । ଚମକି ପଡ଼ିଲା, ପଦଲାମ୍ ଫେରିଲା କି ? ସିଏ ଧଡ଼ ପଡ଼ ହୋଇ କବାଟ ପାଖକୁ ଧାଇଁଗଲା । କବାଟ ଫାଙ୍କରେ ବାହାରକୁ ଚାହିଁଲା, ଅନ୍ଧାରରେ କିଛି ଦିଶୁନାହିଁ । ବାଁ ହାତରେ ଡିବିରି ଧରି ଡାହାଣ ହାତରେ କବାଟର ଶିଙ୍କୁଳି ଖୋଲିଦେଲା, ଠିଆ ହେଇଛି ପଦଲାମ୍, ଡିବିରି ଆଲୁଅରୁ ଫାଳେ ତା ମୁହଁ ଓ ଦେହରେ ବିଛାଡ଼ି ହୋଇ ପଡ଼ିଛି, ମୁଣ୍ଡବାଳ ଝୁରୁଝୁରୁ । ମୁହଁରେ ବ୍ୟସ୍ତତାର ଭାବ । ଦୁଇ ତିନି ଦିନ

ହେଲା କୋଉଠି ଖାଉଥିଲା କୋଉଠି ପିଉଥିଲା ? ତା ପାଖକୁ ଲାଗି ଗୋଟାଏ କିଏ ଠିଆ ହେଲାପରି ତାକୁ ଲାଗିଲା । ସିଏ ସେମିତି ଏରୁଣ୍ଡି ଭିତରେ ଥାଇ ବାଁ ହାତଟା ଆଉ ଟିକେ ଆଗକୁ ବଢ଼େଇ ଦେଲା । ଦୁଇଟି ଢ଼େଲା ଢ଼େଲା ଆଖି । କଳା କିଟିକିଟି ସ୍ତ୍ରୀଟିଏ । କାଖରେ ଗଣ୍ଠିଲି । ପିଣ୍ଡା କଡ଼କୁ ଆଉଜି ଠିଆ ହୋଇଛି । ସନମତିକୁ କିଛି ବୁଝିବାକୁ ବାକି ରହିଲା ନାହିଁ । ତା' ହାତରୁ ଡିବିରିଟା ଖସି ପଡ଼ିଲା ତଳେ । ତା' ଛାତି ଭିତରଟା ଦାଉଁ ଦାଉଁ କଲା । । ମୁଣ୍ଡ ଘୁରେଇ ଦେଲା । ତା' ପାଦତଳର ମାଟିଗୁଡ଼ାକ ସତେ ଅବା ପାତାଳକୁ ଚାଲିଯାଉଛନ୍ତି । ସିଏ ନଥ୍ କରି ବସି ପଡ଼ଇଲା ତଳେ । ତା' ଚେତା ବୁଡ଼ିଗଲା ।

ସେ ଚେତା ପାଇଲା ବେଳକୁ ଦେଖିଲା ତା ସଂସାର ଉଜୁଡ଼ି ଯାଇଛି । ସେ ଶ୍ୱଶୁର ବୁଢ଼ାର ଅନ୍ଧାରୁଆ ବଖରାରେ । କବାଟ ଦରଆଉଜା । ଭିତର ବଖରାରୁ ଚାପା ହସ, ଥଟ୍ଟା ମଜା ଓ ବାସନ କୁସନର ଖୁଡ଼୍‌ଖାଡ଼୍ ଶବ୍ଦ ଶୁଭୁଛି, ଭାସିଆସୁଛି ମହୁଲି ମଦର ବାସ୍ନା ।

ସେଇଦିନ ଠୁଁ ପଦଲାମ୍‌କୁ ସେ ଛି କରିଦେଲା ଯେ ଦେଲା । ଆଉ କେବେ ତାକୁ ମୁହଁ ଟେକି ଦେଖିନାହିଁ, ଘୃଣାରେ ନୁହେଁ କି ପ୍ରେମରେ ନୁହେଁ । ସେ ଅନୁଭବ କଲା ଯାହାକୁ ଜୀବନ ବୋଲି ସେ ଭାବୁଥିଲା ସେ ଜୀବନ ନୁହେଁ, ପୁଷ୍ ମାସର୍ ଘନଘୋର କୁହୁଡ଼ି । ଦିନର ଆୟୁଷ ବଢ଼ିବା ସଂଗେ ସଂଗେ ସେ ସବୁ ମିଳେଇଗଲା ପବନରେ । ଧରି ରଖି ପାରିଲାନି ସନମତି । ଖାଲି ସେତିକି ହେଲେ ହୋଇଥାନ୍ତା ? ସେ ସମ୍ଭାଳି ନେଇଥାନ୍ତା ନିଜକୁ । ସିଏ ଡୁମା ହେଇ, ଦାନ୍ତ ନିକିଟି, ଆଖି ତରାଟି ଜିଭକାଢ଼ି ତାକୁ କେତେବେଳେ ଖତେଇ ହେଲା ତ କେତେବେଳେ ଭୟ ଦେଖେଇ ଗୋଡ଼େଇ ଆସିଲା । ତା' ଥାଇତା ପଣକୁ ରାମ୍ପି ବିଦାରି ପକେଇଲା । ଟହ ଟହ ହୋଇ ହସି ତାକୁ ଚେତେଇ ଦେଲା ଯେ ତୁ ବାଂଝ୍‌ନୀ, ତୁ ବାଂଝ୍‌ନୀ । ମାଇଜୀ ଜନମ ପାଇଚୁ ସିନା ହେଲେ ମାଇଜୀ ତଳେ ଲେଖା ନୁହଁ । ତୁ ଅଲୋଡ଼ା, ଅଖୋଜା । କାହାରି କାମରେ କେବେ ଆସିବୁ ନାହିଁ । ତୋ ମୁହଁ ଚାହିଁଲେ ପାପ । ତୋ ବଞ୍ଚିବା ଖାଲି ଧର୍‌ତୀ ମାଆକୁ ବୋଝ । ସନମତି ଆଖି ବନ୍ଦ କରି ତକିଆରେ ମୁହଁ ମାଡ଼ିଦିଏ । ଝର ଝର ଲୁହ ବୋହି ତକିଆ ଭିଜେ । ତାକୁ ବୁଦ୍ଧିବାଟ ଦିଶେନାହିଁ । ତା' ଭାଗ୍ୟ ତାକୁ ଉପହାସ କରିଛି, ବିଧାତା ତାକୁ ଅଧାପନ୍ତରିଆ କରି ଗଢ଼ିଛି । ସିଏ ଦୋଷ ଦେବ କାହାକୁ ? ସିଏ ଦୋଷ ଦେବ କାହାକୁ ? ଯୋଉ ଘରର ସେ ସର୍ବମୟୀ କର୍ତ୍ତ୍ରୀ ଥିଲା ସେ ଘର ପାଇଁ ସେ ଆଜି କିଛି ନୁହେଁ । ଧୂଙ୍ଗିଆ ଥୁକ ଭଳି ଫିଙ୍ଗି ହୋଇ ପଡ଼ିଛି ଅଳିଆ ଗଦାରେ । ତାକୁ ବିଷ ପିତା ଲାଗିଲା ତା' ଘରକରଣା । ତା' ଘରଣୀପଣ, ମରଦ ସୁଆଗ ସବୁ ମିଛ । ଧୂଆଁ ବାଣ । ନିଜ ଉପରକୁ ଏତେ ଟିକେ ଆଞ୍ଚ ଆସିଲେ ଘାଇଲା ବାଘୁଣୀ ପରି ଗର୍ଜି ଉଠୁଥିବା ସନମତି ପଦଲାମ୍‌କୁ କିଛି କହିଲା ନାହିଁ । ପଥର ପାଲଟି ଗଲା । ଘୃଣାରେ, ଅଭିମାନରେ, ଅଭିଯୋଗରେ କି ଅପମାନରେ କେଜାଣି ସମ୍ପୂର୍ଣ୍ଣ ନୀରବିଗଲା । ଏବେ ପଦଲାମ୍ ତାର କେହି ନୁହେଁ । ନା ସୁଖର ସାଥୀ ନା ଦୁଃଖର

ସାଥୀ । ହରଦମେ ପରସ୍ପରକୁ ନିର୍ଭର କରି ଚଳୁଥିବା ପ୍ରାଣୀ ଦୁଇଟା ମୁହୂର୍ତ୍ତକ ଭିତରେ ସାତପର ହୋଇଗଲେ । ପ୍ରତି ମୁହୂର୍ତ୍ତରେ ପଦଲାମ୍ ଗୋଟାଏ ଘମାଘୋଟ ଯୁଦ୍ଧର ଆଶଙ୍କା କରି ସାଙ୍କୁଡ଼ି ଯାଉଥିବା ବେଳେ ସନମତି ନିଜ ଭିତରେ ସୃଷ୍ଟି ହେଉଥିବା ଝଡ଼କୁ ସାମ୍ନା କରିବା ପାଇଁ ମାନସିକ ପ୍ରସ୍ତୁତି ନେଉଥିଲା ।

ସନମତି ଏଥର ଅଣ୍ଟା ଭିଡ଼ିଲା । ସେ ବଞ୍ଚିବ । ପଦଲାମ୍‌ର ହାତଟେକାରେ ନୁହେଁ । ସେ ଗୁଲି ଚାଙ୍ଗଡ଼ା ତିଆରି କରିପାରିବ ନାହିଁ । ଗୁଲି ଚାଙ୍ଗଡ଼ାର ମୂଳଧନରେ ପଦଲାମ୍ ମାଇଜୀ ଆଣିଲା । ତା' ହାତ ଶୂନ୍ୟ । ସେ ବାରଘରେ ପାଇଟି କରି ପେଟ ପୋଷିବ ସିନା ଆଉ ପଛକୁ ଫେରି ଚାହିଁବ ନାହିଁ । ସତକୁ ସତ ସେ ଆଉ ପଛକୁ ଫେରି ଚାହିଁଲା ନାହିଁ । ସେଇ ବାହାର ଘରଟାରେ ସିଏ ତା'ର ହାଣ୍ଡି ଚୁଲ୍ଲୀ କଲା । ପଦଲାମ୍‌ର ସଂସାରକୁ ଛେପ ପକେଇ ଦେଲା । ମୁହଁ ବୁଲେଇ ଚାହିଁଲା ନାହିଁ ।

ଗୋଟାଏ ସଂସାର ଉଜୁଡ଼ି ଗଲା ବେଳକୁ ଆଉ ଗୋଟାଏ ସଂସାରରେ ସୁଖର ଫସଲ କେଣ୍ଡା କେଣ୍ଡା ହୋଇ ଝୁଲିଲେ । ସନମତିର ସବୁ ନିପାରିଲା ପଣକୁ ଖତେଇ ହୋଇ ସେଇ କାଳି ମୋଟୀ, ଅସୁନ୍ଦରୀ ଢ଼େଲା ଆଖି ସ୍ତ୍ରୀଟା ମାଆ ହେବାକୁ ଗଲା । ତା'ର ସବୁ ଅସୁନ୍ଦରପଣ ଲୁଚିଗଲା । ମାତୃତ୍ୱର ସୌନ୍ଦର୍ଯ୍ୟରେ ତା' ନାରୀତ୍ୱ ଆହୁରି ଉଜ୍ଜ୍ୱଳି ଉଠିଲା । ସନମତି ଖୁସି ହୋଇ ପାରିଲା ନାହିଁ । ନିଜ ଜୀବନର ସବୁ ଖୁସି ଛଡ଼େଇ ନେଇଥିବା ସ୍ତ୍ରୀ ପ୍ରତି ଇର୍ଷାକାତର ହୋଇପଡ଼ିଲା । ନିଜକୁ ଏକାନ୍ତ ଅସହାୟ ଅନୁଭବ କଲା ।

ଦିନ ଗଡ଼ି ଚାଲିଲା । ଜାନୀଘର ବଂଶଧରକୁ ସେଇ ଅସୁନ୍ଦରୀ ସ୍ତ୍ରୀ ପେଟରେ ଧରି ବୁଲିଲା । କାଲି ଆସିଥିବା ମାଇଜିଟାର ଚେର ଗଲା ଗଭୀରକୁ, ଦଶ ବରଷ ହେଲା ଘର ସଂସାର ସମ୍ଭାଳିଥିବା ସନମତିର ଚେର ହାଲ୍‌କା ହୋଇ ଶିମିଳିତୁଳା ଭଳି ଆକାଶରେ ଉଡ଼ିବୁଲିଲା । ସହିପାରିଲା ନାହିଁ ସନମତି । ଈର୍ଷାର ଅଜଗରଟା ତା' ଭିତରେ ଭିଡ଼ିମୋଡ଼ି ହେଉଥିଲା । କେତେବେଳେ ସେ ନିଜ ବ୍ୟର୍ଥତା ପଣକୁ ଧିକ୍କାର କରୁଥିଲା ତ ଆଉ କେତେବେଳେ ସଉତୁଣୀ ପେଟରେ ଥିବା ପିଲାଟାର ଅଶୁଭ ମନାସୁଥିଲା । ପାଙ୍ଗିଣୀ ଗୁଣିଆ କରି ଜାନୀ ଘର ବଂଶଧରକୁ ଶେଷ କରିଦେବାକୁ ବିଚାର କରୁଥିଲା ।

ନିର୍ଦ୍ଧାରିତ ଦିନ ଆସିଲା । ଗର୍ଭିଣୀ ପ୍ରସବ କଷ୍ଟ ପାଇଲା । ଶୁକ୍ରୀବୁଢ଼ୀ ଦୁଇ ଦିନ ହେଲା ତାକୁ ଜଗି ବସିଛି । ବେଳକୁ ବେଳ ପରିସ୍ଥିତି ଅସମ୍ଭାଳ ହୋଇ ପଡ଼ୁଛି । ସ୍ତ୍ରୀଟା ଆଉ ସମ୍ଭାଳି ପାରୁନାହିଁ । ମଲା କଙ୍କଡ଼ା ଭଳି ହେଲାଣି । ଶୁକ୍ରୀବୁଢ଼ୀ ହାତବାନ୍ଧି ବସିପଡ଼ିଲା । କହିଲା ମୋ ହାତରେ ଆଉ ହବନାହିଁରେ ପଦଲାମ୍ । ତୁ ତାକୁ ଡାକ୍ତରଖାନା ନେଇଯା । ନ ହେଲେ ବିଚାରୀଟା ମରିଯିବ ।

ପଦଲାମ୍ ମୁଣ୍ଡରେ ବଜ୍ର ପଡ଼ିଲା । ଡାକ୍ତରଖନା ଏଠୁ ଦଶ କିଲୋମିଟର ଦୂର । ହାତରେ ଫଟା ପାହୁଲାଟାଏ ନାହିଁ । କେବେ ତ ପଇସାଟିଏ ସଞ୍ଚୟ କରି ରଖିବା ଜାଣିନାହିଁ ପଦଲାମ୍ । ସେ ସବୁ କାମ ଥିଲା ସନମତିର । ସିଏ ଘର ଚଳଉଥିଲା । ତଳିପେଟ ତଳେ

ଗାଞ୍ଜିଆ ଗୋଟାକରେ ପୁଳା ପୁଳା ପଇସା ରଖୁଥିଲା । ଅଣ୍ଟ ନିଅଣ୍ଟକୁ ସୁବିଧା ଅସୁବିଧାକୁ ଶହ ଶହ ଟଙ୍କା ଗଣି ଦେଉଥିଲା । ତା' ହେତୁ ହେଲା, ବରଷେ ଗୋଟାଏ ବିତିଗଲାଣି, ସିଏ ସନମତିକୁ ଭଲ କରି କଥ ପଦେ କହିନାହିଁ । ଗୋଟାଏ ଘର ଭିତରେ ରହୁଥିଲେ ବି ଦୁହିଁଙ୍କ ଭିତରେ ଯେମିତି ସାତ ସମୁଦ୍ର ତେର ନଈ ବହି ଯାଉଛି । ଅସଲ କଥା ହେଲା ତା'ର ମୁହାଁମୁହିଁ ହେବା ପାଇଁ ସାହସ ଜୁଟେଇ ପାରିନାହିଁ ପଦଲାମ୍ । ସେ ଅନୁଭବ କଲା ଏମିତି ବିପଦ ବେଳେ ସନମତି ହିଁ ତାର ସାହା ଭରସା । ତା' ପ୍ରତି କରିଥିବା ଅପରାଧ ପାଇଁ ନିଜକୁ ଧିକ୍କାରୀ ହେଲା । ସେ ଅନ୍ୟାୟ କରିଛି, ତା' ଆଖିରେ ଲୁହ ଦେଇଛି । ସେଇ ଲୁହ ଏବେ ପଡ଼ିଛି ଗର୍ଭିଣୀ ସ୍ତୀଟା ଉପରେ । ସେ ଖଲାସ ହୋଇ ପାରୁନାହିଁ ।

ସନମତି ବଖୁରିକିଆ ଘରେ ଶୋଇଛି । ଭିତରପଟୁ କବାଟ ବନ୍ଦ । ଚାରିଆଡ଼ ଜାଙ୍ଗୁଲୁ ଜାଙ୍ଗୁଲୁ ଅନ୍ଧାର । ରାତି ଆହୁରି ଭଲକରି ପାହିନାହିଁ । ପଡ଼ିଶା ଘର କୁକୁଡ଼ା ଭାଡ଼ିରୁ ଗଞ୍ଜା କୁକୁଡାଟା ରାବଦେଲା- କକ୍‌ରେ କକ୍, କକ୍‌ରେ କକ୍ । ପଦଲାମ ଧୀରେ ଧୀରେ ସନମତି ଶୋଇବା ବଖରା ପାଖକୁ ଗଲା ଓ କବାଟ ପାଖରେ ଠିଆହୋଇ ଧୀର ସ୍ୱରରେ ଡାକିଲା ।

ସନମତି ! ଏ ସନମତି ! ଉଠିଲୁଣି କି ସନମତି ? ସନମତି ସାରା ରାତି ଶୋଇ ନଥିଲା । ଏପଟେ ପ୍ରସବ ବେଦନାରେ ଅତିଷ୍ଠ ହେଉଥିବା ସ୍ତୀଟାର ଆର୍ତ୍ତ ଚିତ୍କାର । ଏଥିରେ କ'ଣ କିଏ ଶୋଇପାରେ ? କାନ ଡେରିଲା । ପଦଲାମ୍‌ର ସ୍ୱର । ସିଏ କଡ଼ ଲେଉଟାଇଲା ଓ ଜାଣିଶୁଣି କିଛି ଜବାବ ଦେଲା ନାଇଁ । ପଦଲାମ ପୁଣି ଥରେ ଡାକିଲା- 'ଏ ସନମତି ! ଟିକେ ଶୁଣ୍ ତ । ବିପଦ ଗୋଟାଏ ପଡ଼ିଲାଣି ।'

ସନମତି ଦେହରେ ନିଆଁ ଲାଗିଗଲା । ବରଷ ଗୋଟାଏ ହୋଇଯିବ କୁଆଡ଼େ ଥିଲା । ସନମତି ମଲା କି ହଜିଲା ପଚାରୁ ନଥିଲା । ଦିନେ ତ ଏମିତି କଅଁଳ କଣ୍ଠରେ ଡାକୁ ନଥିଲା ! ସେମିତି ଶୋଇରହି ସେ କହିଲା- 'ମୁଇଁ କିସ୍ କରିବି ତୋର ବିପଦ ପଡ଼ିଲେ ? ମୁଇଁ ତୋର କିଏ ?'

ପଦଲାମ୍ ଆହୁରି ନରମି ଯାଇ କହିଲା- ମୋର ଭୁଲ୍ ହୋଇଚି ସନମତି । ତତେ ହାତ ଯୋଡୁଚି । ତୁ ପଛକଥା ସବୁ ଭୁଲିଯା । ତୁ ଦୟା କଲେ ଗର୍ଭିଣୀଟା ଉଦ୍ଧାର ପାଇଯିବ । ଜାନୀ ବଅଁଶ ଆଗକୁ ବଢ଼ିବ ।

ସନମତି ଚିହିଁକି ଉଠିଲା- 'ତୋର ଜାନୀ ବଅଁଶ ବଢୁ କି ଛିଡୁ ମୋର ଯାଏ ଆସେ କେତେ ?'

ପଦଲାମ୍ ତଥାପି ଆଶା ଭରସା ତୁଟେଇ ନଥିଲା । ସିଏ ବିକଳ ହୋଇ କହିଲା- 'କିଛି ପଇସା ରଖିଛୁ ହେଲେ ଦେ । ତାକୁ ନବରଙ୍ଗପୁର ନେବି । ନ ହେଲେ ସିଏ ମରିଯିବ । ମୋ ପାଖରେ ପଇସାଟିଏ ନାହିଁ ।' ସନମତି ସେମିତି ଗର୍ଜନ କରି କହିଲା- 'ମୋର ପଇସାରେ ମାଇଜୀ ଆଣିଲୁ । ମୋ ବେପାର ବଣିଜ ବୁଡ଼େଇଲୁ । ମୁଁ ପରଘରେ ପାଇଟି କରି ପେଟ ପୋଷିଲି । ମୋ ପାଖରେ ଚାରନା ଡାବୁ ନାହିଁ । ତତେ କୋଉଠୁ ଆଣି ଦେବି ?'

ଚୁପ୍ ହୋଇଗଲା ପଦଲାମ୍ । ତାର ସକଳ ଆଶା ଭରସା ତୁଟିଗଲା । କିଛି ବୁଦ୍ଧିବାଟ ଦିଶିଲା ନାହିଁ । ଲଥ୍ କରି ବସିପଡ଼ିଲା ତଳେ ।

ପ୍ରସୂତୀର ଆର୍ତ୍ତ ଚିତ୍କାରରେ ପାହାନ୍ତା ପହରଟା ଥରି ଉଠୁଥିଲା । ସନମତି ଆଉ ଶୋଇ ପାରିଲା ନାହିଁ । ଧୀର ପଦକ୍ଷେପରେ ବିଛଣା ଛାଡ଼ି ବାହାରକୁ ବାହାରି ଆସିଲା । ଭିତରୁ ଶୁଭୁଛି ଗର୍ଭିଣୀର କୁନ୍ଥାଣ ସାଙ୍ଗକୁ ଲହରିଆ କାନ୍ଦ ।

ବେକର ସୋରିଷିଆ ମାଳିଟା ବାହାର କରି ସେ ହାତ ପାପୁଲିରେ ଧରିଲା । ପଦଲାମ୍ ପାଖକୁ ଯାଇ ନରମ କଣ୍ଠରେ କହିଲା- 'ପଇସାଟିଏ ତ ରଖେଇ ଦେଲୁନି ମୋ ପାଖରେ । ଏଇଟା ସାଉକାର ଘରେ ବନ୍ଧା ରଖି ପଇସା ଆଣ୍ । ଗାଡ଼ି କରି ତୋ ମାଇଜୀକୁ ଡାକ୍ତରଖାନା ନେଇଯା ।'

'ଜାନୀ ବଉଁଶ ବୁଡ଼ିବ ନାଇଁ ଜମା । ଆଗକୁ ବଢ଼ିବ ।' ଜଣେ ସିଦ୍ଧ ସାଧକଙ୍କ କଣ୍ଠର ଉଚ୍ଚାରଣ ଭଳି ସନମତି କଣ୍ଠରୁ ବାକ୍ୟଟିଏ ବାହାରି ଆସିଲା ।

ଏହା ଥିଲା ତା' ମନର ଭାଷା, ତା ପ୍ରାଣର ଭାଷା, ଅନ୍ତରର ଗଭୀରତମ ପ୍ରଦେଶର ଭାଷା । ଅସ୍ଥିମଜ୍ଜା, ରକ୍ତମାଂସ ଓ ଶିରାପ୍ରଶିରାରୁ ଦୁହିଁ ହୋଇ ତାହା ଆସିଥିଲା ଓଠ ପାଖକୁ ।

ଚମକି ପଡ଼ିଲା ପଦଲାମ୍ । ଇୟେ କି ରୂପ ସନମତିର ? କାଳକ ପଦଲାମ୍ ପାଇଁ ସେ ଦୁର୍ବୋଧ ହୋଇ ରହିଗଲା । ଦୁଇ ବର୍ଷକାଳ ଗୁଲି ଚାଙ୍ଗଡ଼ା ପଇସାରୁ ଗୋଟି ଗୋଟି କରି ସଞ୍ଚି ସିଏ ଏଇ ସୋରିଷିଆ ମାଳିଟା କରିଥିଲା । ପ୍ରାଣଠୁ ବଳି ଥିଲା ତା'ର ଏ ହାର । ଗୋଟାଏ ମୁହୂର୍ତ୍ତ ବି ସେ ବେକରୁ ବାହାର କରୁ ନଥିଲା । ଆଜି ଯାହା ପାଇଁ ସେ ସର୍ବସ୍ୱାନ୍ତ ହୋଇଛି, ଯିଏ ତା'ର ସକଳ ସୁଖଶାନ୍ତି ଛଡ଼େଇ ନେଇଛି । ଯାହା ପାଇଁ ସେ ପରଘରେ ପାଇଟି କରି ନିରିମାଖି ଜୀବନ ବିତଉଛି, ତା' ଜୀବନର ପରମଶତ୍ରୁ ସଉତୁଣୀ ପାଇଁ ବଢ଼େଇ ଦଉଛି ଗଳାର ସୁନା ସୋରିଷିଆ ମାଳି ।

ନିଜ ଆଖିକୁ ବିଶ୍ୱାସ କରିପାରୁ ନଥିଲା ପଦଲାମ୍ । ଅବିଶ୍ୱାସ୍ୟ ଦୃଷ୍ଟିରେ ସେ ବିସ୍ମୟ ହୋଇ ସନମତି ମୁହଁକୁ ଚାହିଁଲା । ସେ ମୁହଁରୁ ଯେମିତି ଝରି ପଡୁଥିଲା ମୁଠା ମୁଠା ଶିଶିର ଭିଜା ଗଙ୍ଗଶିଉଳି । ତା' ଦୁଇ ଆଖି କୋଣରୁ ନିଗିଡ଼ି ପଡୁଥିଲା ଦୁଇଧାର ଲୁହ । ଦୁଇ ଦାନ୍ତ ସନ୍ଧିରେ ତଳ ଓଠଟାକୁ ଚାପି ସେ କୋହକୁ ରୋକୁଥିଲା ।

ଏ ଲୁହ କ'ଣ ଅସହାୟତାର ? ଅଭିମାନର ? ଆତ୍ମତୃପ୍ତିର ଅଥବା ଏ ସବୁର ଫେଣ୍ଟାଫେଣ୍ଟି ଗୋଟିଏ ମିଶ୍ରିତ ଆବେଗର ? କୃତଜ୍ଞତାରେ ବତୁରି ଯାଉଥିବା ପଦଲାମ୍ ଏକମୁହାଁ ହୋଇ ଧାଇଁଲା ସାଉକାର ଘରକୁ ।

ସନମତି ସେମିତି ଠିଆ ହୋଇଥିଲା କାଠ ପରି । ପୂର୍ବଦିଗରେ ସିନ୍ଦୂରା ଫାଟି ଆସୁଥିଲା । ସୁରୁଜ ଦେବତା ବାହାରି ଆସିବା ପାଇଁ ଆଉ ମାତ୍ର କେଇ ମୁହୂର୍ତ୍ତ ବାକି ଥିଲା ।



# ଜରାନିବାସ

ସୌଭାଗ୍ୟଙ୍କ ପ୍ରସ୍ତାବଟା ଶୁଣୁଶୁଣୁ ମୁଁ ସ୍ତମ୍ଭୀଭୂତ ହୋଇପଡ଼ିଲି । ସତେଅବା ତୀରଟିଏ ବିଦ୍ଧ ହୋଇଗଲା ମୋ ଛାତିରେ । ଗୋଟାଏ ଅଜଣା ଆତଙ୍କରେ ମୋ ତାଳୁରୁ ତଳିପାଯାଏ ଥରି ଉଠିଲା । ଅଥଚ କେଡ଼େ ସହଜ କଣ୍ଠରେ ସେ ଉଚ୍ଚାରଣ କରିପାରିଲେ, "ବାପା-ବୋଉଙ୍କୁ ଜରାନିବାସକୁ ପଠେଇଦେବା ।" ବାପା ମାଆଙ୍କର ସେ ଏକମାତ୍ର ସନ୍ତାନ । ଜୀବନଠୁଁ ବଳି ଭଲପାଆନ୍ତି ସେମାନେ ପୁଅକୁ । ସୌଭାଗ୍ୟ ବି କୌଣସି କଥା ତଳେ ପକାନ୍ତି ନାହିଁ ବାପାବୋଉଙ୍କର । ସେମାନଙ୍କ ସୁଖ-ସ୍ୱାଚ୍ଛନ୍ଦ୍ୟ ପାଇଁ ପାଦେ ପାଦେ ନିଘା ରଖିଥାନ୍ତି । ସେଇ ପୁଅର କେମିତି ଆସିଲା ଏ ଚିନ୍ତା ?

ଅବଶ୍ୟ ମୁଁ ସ୍ୱୀକାର କରୁଛି ଯେ ଦୀର୍ଘ ସତର ଅଠର ବର୍ଷର ବୋହୁପଣ ଭିତରେ ମୁଁ ଶାଶୁଶ୍ୱଶୁରଙ୍କୁ ସନ୍ତୁଷ୍ଟ କରିପାରିନାହିଁ । ଅତି ଛୋଟିଆ ଛୋଟିଆ କଥାରେ ବି ଆମ ଭିତରେ ମନାନ୍ତର ହୁଏ, ମତାନ୍ତର ହୁଏ । ମୁଁ ବିରକ୍ତ ହୋଇ ସେମାନଙ୍କୁ ବାଧିଲା ଭଳି କିଛି କଥା କହିଦିଏ ତ ସେମାନେ ସେଇ କଥାକୁ ଗଣ୍ଠି କରି ଧରିଥାନ୍ତି । ଶାଶୁ ରୁଷନ୍ତି, ଖାଆନ୍ତି ନାହିଁ । ଶ୍ୱଶୁର ଘରେ ରହନ୍ତି ନାହିଁ, ବାହାରକୁ ଚାଲିଯାଆନ୍ତି, ଡେରିରେ ଫେରନ୍ତି । ଦୁଇ ତିନିଦିନ ପର୍ଯ୍ୟନ୍ତ ପରିବାରରେ ବର୍ଷଣମୁଖର ବାଦଲଟିଏ ଥମ୍‌ଥମ୍ ହୋଇ ରହେ । ପୁଣି ସ୍ୱାଭାବିକ ଅବସ୍ଥାକୁ ଫେରିଆସେ । ପ୍ରତିଥର ମୋତେ ହିଁ ସେମାନଙ୍କ ସହ ସାଲିସ୍ କରିବାକୁ ପଡ଼େ । ମୋର ଦୋଷ ଥାଉ କି ନଥାଉ, ସେମାନଙ୍କୁ ମନେଇବାକୁ ମୋତେ ଭୁଲ୍ ମାଗିବାକୁ ପଡ଼େ । ଝିଙ୍ଗାସ ଶୁଣିବାକୁ ପଡ଼େ । ମୁଁ ଚାକିରି କରୁଛି ବୋଲି ଉପରମୁହାଁ ହୋଇଯାଇଛି ଓ ପଇସା ରୋଜଗାର କରୁଛି ବୋଲି ସେମାନଙ୍କୁ ଖାତିର କରୁନାହିଁ ବୋଲି ଅପନିନ୍ଦା ପାଏ । ଗାଁରୁ କେହି ଆସିଲେ ଅନ୍ୟ ବୋହୂମାନଙ୍କ ଭଳି ମୁଁ ଶାଶୁ-ଶ୍ୱଶୁରଙ୍କ ଗୋଡ଼ ମୋଡ଼ିଦେଉ ନାହିଁ, ଶାଶୁଙ୍କ ମୁଣ୍ଡ କୁଣ୍ଡେଇ ଦେଉ ନାହିଁ ବୋଲି ସେମାନେ ଆପ୍‌ସାମାରି କହନ୍ତି । ମୁଁ ଶୁଣି ନ ଶୁଣିଲା ଭଳି ରହେ ।

ମୋର ସେଣ୍ଟ୍ରାଲ ସ୍କୁଲ ଚାକିରୀ । ସକାଳ ଛଅଟାରୁ ଦିନ ଦୁଇଟା ପର୍ଯ୍ୟନ୍ତ ଖଟଣି । ସେଥିରେ ପୁଣି ପିନୁର ପାଠପଢ଼ା ବି ଦେଖିବାକୁ ହୁଏ । ଆଜିକାଲି ବିଶ୍ୱସ୍ତ ଚାକରଚାକରାଣୀ ମିଳିବା ଓ ସେମାନଙ୍କ ମନ ନେଇ ଚଳିବା କେତେ କଷ୍ଟକର ତାହା ଅନୁଭବୀ ହିଁ ଜାଣେ । ସୌଭାଗ୍ୟଙ୍କର ଦିଲ୍ଲୀ ଟ୍ରାନ୍ସଫର୍ ହେବା ଦିନଠୁଁ ମୁଁ ଅଣନିଃଶ୍ୱାସୀ ହୋଇପଡ଼ିଲିଣି ।

ଠିକା ଚାକରାଣୀ ଆସେ, ସିଏ ଖାଲି ବାସନ ଦି'ଖଣ୍ଡ ମାଜି ଘର ସଫା କରି ଚାଲିଯାଏ । ଶାଶୁଙ୍କର ନାହିଁ ନଥିବା ପୂଜାପାଠ ଉପାସବ୍ରତ । ତାଙ୍କ କାମକୁ ଠିକା ଚାକରାଣୀ ଛୁଇଁଲେ ମାରା । ଯେତେ କାମ ଥିଲେ ବି ମୋତେ ହିଁ ତାଙ୍କୁ ସାହାଯ୍ୟ କରିବାକୁ ପଡ଼େ । ତାଙ୍କର ପୂଜାବ୍ରତ ଥିଲେ ମୋତେ ପ୍ରାୟତଃ ଛୁଟି ନେବାକୁ ପଡ଼େ । ସବୁବେଳେ ମାନସିକ ଅବସ୍ଥା ଠିକ୍ ନଥାଏ । ବିରକ୍ତ ହେଇ କେତେବେଳେ କ'ଣ ପାଟିରୁ ବାହାରି ପଡ଼ିଲେ ସେମାନେ ତିଳକୁ ତାଳ କରନ୍ତି । ମୁଁ ଅସହାୟ ହୋଇପଡ଼େ । ସୌଭାଗ୍ୟଙ୍କ ପାଖରୁ ଆଶାନୁରୂପ ସାନ୍ତ୍ୱନା ମିଳେନାହିଁ । ତାଙ୍କୁ ଫୋନ୍ କଲେ ସେ ବାପାମାଆଙ୍କୁ କିଛି ନ କହି ମୋତେ କହନ୍ତି, ମଧୁ ! ତୁମେ ମୂର୍ଖ ମଫସଲୀ ବୋହୂ ନୁହେଁ କି ମୁଁ ହଳୁଆ ସ୍ୱାମୀ ନୁହଁ ଯେ ଶାଶୁବୋହୂଙ୍କ କଳିରେ ମଧ୍ୟସ୍ଥ ହୋଇ ମୋତେ ନ୍ୟାୟ ନିଷ୍ପତ୍ତି କରିବାକୁ ପଡ଼ିବ । ବୃଦ୍ଧ ବାଳୁତ ସମାନ । ପିନାକୀ ତମର ଯେମିତି ଗୋଟାଏ ପୁଅ, ବାପାବୋଉଙ୍କୁ ସେମିତି ଆଉ ଦୁଇଟି ଛୋଟ ଛୋଟ ପୁଅଝିଅ ବୋଲି ଭାବିବ । ତମେ ବୁଦ୍ଧିମତୀ । ପରିସ୍ଥିତିକୁ କେମିତି ଆୟତ୍ତ କରାଯାଇ ପାରିବ, ମୋ ଅପେକ୍ଷା ତୁମକୁ ବେଶି ଜଣା । ତମରି ଭରସାରେ ବାପାବୋଉଙ୍କୁ ଛାଡ଼ି ମୁଁ ଏଠି ନିଶ୍ଚିନ୍ତରେ ଅଛି । ମୁଁ ଜାଣିଛି ତମେ ମୋତେ ନିରାଶ କରିବନି ।

ମୁଁ ଚୁପ୍ ହୋଇଯାଏ । ଏମିତି ଲୋକ ପାଖରେ କି ହାରିଗୁହାରୀ କରିବି ? କଷ୍ଟ ହୁଏ । ବେଳେବେଳେ ଭାରି ଅସହ୍ୟ ଲାଗେ । ମୋ ଭିତରେ ବିସ୍ଫୋରଣ ହୋଇ ଆସୁଥିବା ପ୍ରତିକ୍ରିୟାକୁ ଆତ୍ମସ୍ଥ କରିନିଏ । ଅବଦମିତ କ୍ରୋଧ ଉଦ୍‌ଗୀରଣ ହେବା ପାଇଁ ରାସ୍ତା ଖୋଜେ । ସେସବୁ କେନ୍ଦ୍ରୀଭୂତ ହୁଏ ମୋ ନିରୀହ ପୁଅ ପିନାକୀ ଉପରେ । ତା'ର ଏତେ ଟିକିଏ ଭୁଲ୍ ବି ମୋ ଆଖିରେ ଯାଏନାହିଁ, କାରଣ ଅକାରଣରେ ମୁଁ ତା' ଉପରେ ବିରକ୍ତ ହୁଏ... । ଚିଡ଼୍‌ଚିଡ଼୍ ହୁଏ । ସିଏ ପ୍ରତିବାଦ କଲେ ମୋ ହାତ ଉଠିଯାଏ । ଶାଶୁଶ୍ୱଶୁର ସହିପାରନ୍ତି ନାହିଁ । ତାଙ୍କ ଆଖି ଆଗରେ ତାଙ୍କ ନାତିକୁ ମାରିବାର ଅଧିକାର ମୋର ନାହିଁ ବୋଲି ମୋତେ ଚେତେଇ ଦିଅନ୍ତି । ମୁଁ ଆହୁରି ଅସହିଷ୍ଣୁ ହୋଇଯାଏ । ସେମାନେ ମୁହଁ ଦେଇ ତାକୁ ନଷ୍ଟ କରୁଛନ୍ତି ବୋଲି କୁହେ । ତୁନି ରହନ୍ତି ନାହିଁ ଶାଶୁଶ୍ୱଶୁର । ସେମାନଙ୍କ ଉପରେ ଥିବା ରାଗକୁ ମୁଁ ତାଙ୍କ ନାତି ଉପରେ ଶୁଝଉଛି ବୋଲି ସେମାନେ ମୋତେ ଦୋଷ ଦିଅନ୍ତି । ପୀନୁକୁ ମାରିଥିବା ଚାପୁଡ଼ାଏ କି କାନମୋଡ଼ାଟା କିମ୍ବା ଗାଳି ଦି'ପଦ ତାଙ୍କ ଉଦ୍ଦେଶ୍ୟରେ ଥିଲା ବୋଲି କହି ଶାଶୁ ସୁଁ ସୁଁ ହୋଇ କାନ୍ଦନ୍ତି । ସେମାନେ ଗୋଟାଏ ମାତ୍ର ପୁଅ ଜନ୍ମ କରିଥିବା ହେତୁ ଭାଗ୍ୟ ଓ ଭଗବାନଙ୍କୁ ଦୋଷ ଦିଅନ୍ତି । ସେମାନେ ଯେ ଏଠି ଅଖୋଜା ଅଲୋଡ଼ା ହୋଇ ପଡ଼ିଛନ୍ତି, ସେକଥା କହି କପାଳକୁ ନିନ୍ଦନ୍ତି । ଏଠି ମୋତେ ମିଳିଥିବା କ୍ୱାର୍ଟରରେ ନ ରହି ଗାଁକୁ ଚାଲିଯିବା ପାଇଁ ଜିଦ୍ ଧରନ୍ତି । ମୁଁ ପୁଣି ନରମି ଯାଏ । ଏତେ ବୟସରେ ଗାଁରେ ରହି ହାତରେ ରାନ୍ଧିବାଢ଼ି ଖାଇଲେ ଲୋକେ

କ'ଣ କହିବେ ? ମୋତେ ହିଁ ସମସ୍ତେ ଦୋଷ ଦେବେ । ଲୋକଙ୍କ କଥା ଛାଡ଼ । ମୋ ବିବେକ ମୋତେ କ୍ଷମା ଦେବ ତ ! ମୁହଁ ଉପରେ ସିନା ସେମାନେ ମୋ ଉପରେ ବିରକ୍ତ ହୁଅନ୍ତି କିନ୍ତୁ ମୁଁ ଠିକ୍ ଜାଣିଛି, ମୋ ବିନା ସେମାନେ ଦିନଟିଏ ବି ଚଳିପାରିବେ ନାହିଁ । ମୋ ସ୍କୁଲ ଯିବା ସମୟତକ ଛାଡ଼ିଦେଲେ ଅହରହ ମାଧବୀ ମାଧବୀ ବୋଲି ହୁରି ପକାନ୍ତି । ଯେତେ ରାଗରୋଷ ଥିଲେ ବି ସେଗୁଡ଼ାକ ପୋଛିଦେଇ ମୁଁ ପୁଣି ତାଙ୍କ ପାଖରେ ପହଞ୍ଚିଯାଏ ।

ଦୁଇ ତିନି ମାସରେ ଥରେ ଆସନ୍ତି ସୌଭାଗ୍ୟ । ପୁଅକୁ ଦେଖି କୋଟିନିଧି ପାଇଲା ପରି ହୁଅନ୍ତି ଦୁହେଁ । ଗୋଟିଏ ମୁହୂର୍ତ୍ତ ବି ପାଖରୁ ଛାଡ଼ନ୍ତି ନାହିଁ । ଦୁନିଆଯାକର ଗପପେଡ଼ି ଖୋଲି ବସନ୍ତି ଶାଶୁ । ତା'ରି ଭିତରେ ମୋ ପ୍ରତି ଥିବା ସକଳ ତିକ୍ତତା ଗୋଟି ଗୋଟି କରି ବଖାଣି ବସନ୍ତି ପୁଅ ଆଗରେ । ସେ ସବୁ ଶୁଣନ୍ତି । ମା'ଙ୍କ ମନ ରଖିବା ପାଇଁ ତାଙ୍କ ଆଗରେ ମୋ ଉପରେ ଖୁବ୍ ଗୁଡ଼ାଏ ବିରକ୍ତ ହୁଅନ୍ତି । ସ୍ୱାମୀପଣ ଜାହିର କରନ୍ତି । ମୋତେ କିଛି କହିବାକୁ ଦିଅନ୍ତି ନାହିଁ । ଶାଶୁଙ୍କ ମୁହଁରେ ଖୁସି ଉଚ୍ଛୁଳିପଡ଼େ । ମୁଁ ଅପମାନିତ ଅନୁଭବ କରେ । ମୋ ଅନ୍ତରାତ୍ମା ଚିତ୍କାର କରିଉଠେ । ମୁଁ ଟମ୍ ଟମ୍ ହୋଇ ବେଡ୍‌ରୁମ୍‌କୁ ଫେରିଆସେ ।

ମାଆଙ୍କୁ ବୁଝେଇସାରି ସେ ମୋ ପାଖକୁ ଆସନ୍ତି । ମୋ ପାଖରେ କାକୁତିମିନତି ହୁଅନ୍ତି । ଅନୁନୟ ବିନୟ କରନ୍ତି । କେବଳ ବୋଉଙ୍କୁ ଖୁସି କରିବା ପାଇଁ ସେ ଏମିତି କରିଛନ୍ତି ବୋଲି ମୋ ହାତ ଧରି ଭୁଲ୍ ମାଗନ୍ତି । କେତେ ନେହୁରା ନିଉଛାଳି ହୁଅନ୍ତି... । ଚାଟୁବାଣୀ କହନ୍ତି । ମୋ ଉପରେ ତାଙ୍କର ପୂର୍ଣ୍ଣ ଆସ୍ଥା ଅଛି । ନଚେତ୍ କେବେଠୁଁ ଭିଆର୍‌ଏସ୍ ନେଇ ସାରନ୍ତେଣି ଅଥବା ବାପା ବୋଉଙ୍କର ବିକଳ୍ପ ବ୍ୟବସ୍ଥା କରନ୍ତେଣି ବୋଲି କହନ୍ତି । ମୁଁ କୃତ୍ରିମ କ୍ରୋଧରେ କହେ– କି ବିକଳ୍ପ ବ୍ୟବସ୍ଥା ଅଛି ତମ ପାଖରେ କହିଲ ? ମତେ ସନ୍ତୁଳି ଖାଇବା ଛଡ଼ା ନା ତମ ପାଖରେ କିଛି ବିକଳ୍ପ ଅଛି ନା ତମ ବାପାମାଆଙ୍କ ପାଖରେ ? ସେ ଖୁବ୍ ବିକଳ ଦିଶନ୍ତି । ତାଙ୍କୁ ଆଉ କଷ୍ଟଦେବା ପାଇଁ ଇଚ୍ଛା ହୁଏନାହିଁ । ତାଙ୍କ କପାଳରେ ହାତ ରଖି କହେ– ମୁଁ ତମ ବିଶ୍ୱାସକୁ ଜୀବନ ଥିବାଯାଏ ସମ୍ମାନ ଦେବି । ତମେ ନିଶ୍ଚିନ୍ତ ରୁହ ।

ଏବେ ମୋର ରାଞ୍ଚି ବଦଳି ହେବାରେ ସେ ସମ୍ପୂର୍ଣ୍ଣ ଅସହାୟ ହୋଇପଡ଼ନ୍ତି । ଦୀର୍ଘ ଆଠବର୍ଷ ହେଲା ଭୁବନେଶ୍ୱରରେ ମୋ ସରକାରୀ କ୍ୱାର୍ଟରରେ ଆମେ ରହୁଥିଲୁ । କ୍ୱାର୍ଟର୍ସ ଛାଡ଼ିବାକୁ ପଡ଼ିବ । ପୁଅ ଇଂଜିନୟରିଂ ଏଣ୍ଟ୍ରାନ୍ସ ଦେଇଛି । ଭୁବନେଶ୍ୱରରେ କୌଣ ଇଂଜିନିୟରିଂ କଲେଜରେ ଆଡ୍‌ମିଶନ୍ କରିଦେଲେ ସେ ହଷ୍ଟେଲ୍‌ରେ ରହି ପଢ଼ିବ । ଆଉ ରହିଲେ ବାପା ମାଆ । ପଞ୍ଚାଅଶୀ ବର୍ଷର ବାପା ଓ ଅଶୀବର୍ଷର ବୋଉଙ୍କୁ ଗାଁରେ ଛାଡ଼ିବାକୁ ଚାହାନ୍ତି ନାହିଁ ସୌଭାଗ୍ୟ । ନଈ ସେପାରି ଗାଁ । ଡାକ୍ତରଖାନାଟିଏ ନାହିଁ । ତାଙ୍କ ସେବାଶୁଶ୍ରୂଷା କରିବାକୁ କେହି ନାହାନ୍ତି । ମୁଁ ରାଞ୍ଚିରେ ଥିବା ପର୍ଯ୍ୟନ୍ତ ବାପାମାଆଙ୍କୁ "ଜରାନିବାସ"ରେ ଛାଡ଼ିବାର ନିଷ୍ପତ୍ତି ନେଇଛନ୍ତି ସୌଭାଗ୍ୟ । ଆବଶ୍ୟକୀୟ ଖର୍ଚ୍ଚ ଦେଇଦେଲେ ବାପାମାଆଙ୍କ

ରହିବା, ଖାଇବା, ଔଷଧ ଖର୍ଚ୍ଚ ଓ ଅନ୍ୟାନ୍ୟ ସେବା ଯୋଗାଇ ଦେବା ପାଇଁ ସେବକ ସେବିକାଙ୍କର ଅଭାବ ରହିବ ନାହିଁ । ତା'ଛଡ଼ା ସେଠିକାର ବିଧିବ୍ୟବସ୍ଥା ଯାହା, ସେଥିରେ ବାପାବୋଉଙ୍କର ସମୟ ବି ଆନନ୍ଦରେ କଟିଯିବ । ଯୋଗ, ପ୍ରାଣାୟମ ଠାରୁ ଆରମ୍ଭ କରି ଧର୍ମ ପ୍ରବଚନ, ପୂଜାପାଠ, ଉପାସବ୍ରତ କରିବା ପାଇଁ ମଧ୍ୟ ସୁବିଧା ସୁଯୋଗ ଯୋଗାଇ ଦିଆଯାଏ । ମନୋରଞ୍ଜନ ପାଇଁ ରେଡିଓ, ଭିଡିଓଠାରୁ ଆରମ୍ଭ କରି ବିଭିନ୍ନ ବ୍ୟବସ୍ଥାମାନ ରହିଛି । ବାପାବୋଉଙ୍କୁ ଏ ବିଷୟରେ ବୁଝାଇବାକୁ ମୋତେ ସେ କହିଥିଲେ । ସେ ମୋତେ ଫୋନ୍‌ରେ କହିଲେ, ଅନ୍ତତଃ ବର୍ଷକ ପାଇଁ ସେମାନେ ସେଇଠି ଥାନ୍ତୁ । ତମେ ରାଞ୍ଚିରେ ଜଏନ୍ କର । ଏ ବର୍ଷତ ଆଉ ବଦଳି ରଦ୍ଦ କରିହେବ ନାହିଁ । ଆସନ୍ତା ବର୍ଷକୁ ମୁଁ ଚେଷ୍ଟା କରି ତମକୁ ଓଡ଼ିଶା ନେଇ ଆସିବି । ଆଉ ବାପାବୋଉଙ୍କୁ ଆମେ ଜରାନିବାସରୁ ଫେରାଇ ଆଣିବା ।

ମୁଁ ସୌଭାଗ୍ୟଙ୍କ ବକ୍ତବ୍ୟର ଯଥାର୍ଥତା ହୃଦ୍‌ବୋଧ କଲି । ପୁଣି ଅନୁଭବ କଲି ସୁଦୂର ଦିଲ୍ଲୀ ସହରରେ ରହି ବାପାବୋଉଙ୍କୁ ଜରାନିବାସରେ ଛାଡ଼ିବାର ନିଷ୍ପତ୍ତି ନେବା ଅତି ସହଜ । କିନ୍ତୁ ସେମାନଙ୍କ ନିତିଦିନିଆ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ ପାଲଟି ଯାଇଥିବା ମୋ ପକ୍ଷରେ ଏ ସମ୍ପର୍କରେ ବିନ୍ଦୁବିସର୍ଗଟିଏ ଉପସ୍ଥାପନା କରିବା କାଠିକର ପାଠ ।

ଅନେକ ଚେଷ୍ଟା କରିଛି ସୌଭାଗ୍ୟଙ୍କ ନିଷ୍ପତ୍ତି ବାପାବୋଉଙ୍କୁ କହିବା ପାଇଁ । ଯେତେଥର ମୁଁ ସେଥିପାଇଁ ମାନସିକ ପ୍ରସ୍ତୁତି ନେଇଛି, ମୋ ପେଟ ଭିତରଟା କେହି ଯେମିତି ଘାଣ୍ଟି ଚକଟି ପକାଇଛି । ମୋ ପଟି ଆଫା ଆଫା ହୋଇଯାଇଛି । ମୋ କଣ୍ଠରୁଦ୍ଧ ହୋଇଯାଇଛି, ଦେହ ଝାଳେଇ ଯାଇଛି, ଦୁର୍ବଳ ହୋଇପଡ଼ିଛି । ମୁଁ କହିପାରି ନାହିଁ । ସୌଭାଗ୍ୟ ଫୋନ୍ କରି ମୁଁ ବାପାବୋଉଙ୍କୁ ଏ ବିଷୟରେ କିଛି କହିଲି କି ବୋଲି ଜାଣିବାକୁ ଚାହିଁଥିଲେ । ମୁଁ ମୋର ଅକ୍ଷମତା ପ୍ରକାଶ କରିବା ପରେ ସେ କହିଲେ, "ଠିକ୍ ଅଛି । ମୋର ଏବେ ଛୁଟି ମିଳିବା କଷ୍ଟ । ମାତ୍ର ଦୁଇ ତିନି ଦିନ ପାଇଁ ଯିବି । ତମେ ଜରାନିବାସ ଯାଇ ଆବଶ୍ୟକୀୟ କାଗଜପତ୍ର କାମ ପ୍ରସ୍ତୁତ କରିଦିଅ ଓ ପଇସା ଡିପୋଜିଟ୍ କରିଦିଅ । ମୁଁ ଗଲାପାରେ ତାଙ୍କୁ ସେଠି ଛାଡ଼ିଦେବି ଓ ତମକୁ ମଧ୍ୟ ରାଞ୍ଚିରେ ପହଞ୍ଚେଇ ଫେରିଆସିବି ।

ସୌଭାଗ୍ୟଙ୍କ କହିବା ଅନୁସାରେ ମୁଁ ଜରାନିବାସର କାଗଜପତ୍ର କାମ ସାରିଦେଲି । ପୀନୁର ଆଡମିଶନ୍ ଡେରି ଅଛି । କାଉନ୍‌ସେଲିଂ ହୋଇ ନାହିଁ । ସେ କିଛିଦିନ ମୋ ପାଖରେ ରହିଯିବ । ଆମେ କ୍ୱାର୍ଟର୍ସ ଛାଡ଼ିଦେବୁ ।

ନିର୍ଦ୍ଧାରିତ ଦିନ ପାଖେଇ ଆସିଲା । ସୌଭାଗ୍ୟ ଦିଲ୍ଲୀରୁ ଆସିଲେ । ପୂର୍ବ ଯୋଜନା ଅନୁସାରେ ସିଏ ବାପାବୋଉଙ୍କ ଆଗରେ ଏ ନିଷ୍ଠୁର ସତ୍ୟର ପରିପ୍ରକାଶ କଲେ । ହତବାକ୍

ହୋଇଗଲେ ସେମାନେ । ତାଙ୍କ ପାଟିରୁ କଥା ବାହାରିଲା ନାହିଁ । ଶାଶୁ ମୁହଁରେ ଲୁଗା ଦେଇ ସୁଁ ସୁଁ ହେଲେ । ସୌଭାଗ୍ୟ ତାଙ୍କୁ ଆଶ୍ୱାସନା ଦେଇ କହିଲେ- "ତୁ ବ୍ୟସ୍ତ କାହିଁକି ହେଉଛୁ ବୋଉ ? ଆମେ କ'ଣ ତମକୁ ସବୁଦିନ ପାଇଁ ସେଠିକି ପଠେଇ ଦେଉଛୁ ? ତୋ ବୋହୂକୁ ମୁଁ ପୁଣି ଏଠିକି ନେଇ ଆସିବିନି ? ବର୍ଷ ଗୋଟାକର କଥା । ଅନଉ ଅନଉ କଟିଯିବ । ପୁଣି ଆମେ ଏକାଠି ରହିବା ।"

ଶାଶୁ ଅଭିମାନରେ କହିଲେ, "ହଁ ରେ ! ବଳବୟସ ଗଲାଣି । ବୁଦ୍ଧି ଭ୍ରମ ହେଲାଣି । ବୁଢ଼ାବୁଢ଼ୀ ମଣିଷ । ଚିଡ଼୍‌ଚିଡା ଧରିଲୁଣି । କ'ଣ କେତେବେଳେ କହିଦେଉଛୁ ବୋଲି ଆମକୁ ନିଆଶ୍ରୀଙ୍କ ଭଳି ଆଶ୍ରମକୁ ପଠେଇ ଦେଉଛ । ଲକ୍ଷେ ଶିବ ପୂଜି ତତେ ପାଇଥିଲି । ପୁଅର ମାଆ ବୋଲି ଛାତି ଫୁଲେଇ ବାଟ ଚାଲୁଥିଲି । ତୁ ଆମକୁ ଆଣ୍ଠୁକୁଡ଼ା ଆଣ୍ଠୁକୁଡ଼ୀ ତଳେ ଲେଖିଦେଉଛୁ । ସାହିପଡ଼ିଶା ବନ୍ଧୁବାନ୍ଧବ କୁଳ କୁଟୁମ୍ବରେ ମୁଁ କି ମୁହଁ ଦେଖେଇବି ?"

ବେଳକୁ ବେଳ ସେ ଅଧୈର୍ଯ୍ୟ ହୋଇପଡ଼ୁଥିଲେ । ମନେପଡ଼ିଲା ପିନାକୀର ସେତେବେଳେ ଅଷ୍ଟମ ଶ୍ରେଣୀ । ଦୁଷ୍ଟ ହେଲା, ପାଠଶାଠରେ ମନ ଦେଲାନି । ଘରଜଞ୍ଜାଳ ଭିତରେ ମୁଁ ତାକୁ ଠିକ୍ ହିସାବରେ ଦେଖିପାରିଲି ନାହିଁ । ସେଇ ବର୍ଷ ଶ୍ୱଶୁରଙ୍କ ମାଇଲଡ୍ ପାରାଲିସିସ୍ ଆଟାକ୍ ହୋଇଥିଲା । ସେଥିପାଇଁ ସମସ୍ତେ ବ୍ୟସ୍ତ ଥିଲୁ । ଅନ୍ତତଃ ବର୍ଷଟେ ପାଇଁ ପୀନୁକୁ ବୋର୍ଡିଂ ସ୍କୁଲରେ ଛାଡ଼ିଦେବାର ନିଷ୍ପତ୍ତି ଆମେ ନେଲୁ । ସିଏ ଯେତେବେଳେ ଏ କଥା ଜାଣିଲା ମୋତେ କୁଣ୍ଢେଇ ଧରି ବିକଳ ହେଇ କହିଲା- "ମାମା ! ମୁଁ ଆଉ ଚଗଲା ହେବିନି । ମୋତେ ହଷ୍ଟେଲ୍‌ରେ ଛାଡ଼ନାହିଁ, ମୁଁ ତମ ପାଖରେ ରହିବି । ମନ ଦେଇ ପାଠ ପଢ଼ିବି ।" ମୁଁ ସୌଭାଗ୍ୟଙ୍କୁ କହିଲି, "ତମେ ବ୍ୟସ୍ତ ହୁଅନି, ସେ ଏଇଠି ଥାଉ । ମୁଁ ସବୁ ସମ୍ଭାଳି ନେବି ।" ଶାଶୁଙ୍କ ମୁହଁରେ ମୁଁ ସେବେଳର ସେଇ ପୀନୁର ବ୍ୟସ୍ତବିକଳ ମୁହଁ ଦେଖିପାରିଲି । ମୋ ହୃଦୟଟା ମଚ୍ଛିଚକଟି ହୋଇଗଲା ।

ଶ୍ୱଶୁର କିଛି ପ୍ରତିକ୍ରିୟା ପ୍ରଦର୍ଶନ କଲେ ନାହିଁ । ଗମ୍ଭୀର ହୋଇ ତାଙ୍କ ପୁଅକୁ କହିଲେ, ତୁ ଯାହା ଠିକ୍ ଭାବୁଛୁ କର । ମୁଁ ତୋ ବୋଉକୁ ବୁଝେଇ ଦେବି ।

ତା'ପରଦିନ ସକାଳୁ ଡ୍ରାଇଭର ଗାଡ଼ି ଧରି ଆସି ପହଞ୍ଚି ଗଲା । ରାତି ସାରା ଶ୍ୱଶୁର ଶାଶୁଙ୍କୁ ବୁଝେଇ ଥିଲେ । ସଫଳ ହେଲେ କି ନାହିଁ କେଜାଣି, ସିଏ କିନ୍ତୁ ଆଉ ପ୍ରକାଶ୍ୟରେ କାନ୍ଦୁନଥିଲେ । ସତେ ଯେମିତି ଗତକାଲିର ଅଝଟିଆ ଶିଶୁ ଆଜି ବୁଝାକି ହୋଇଯାଇଛି । ତାଙ୍କ ଆଖି ଦୁଇଟା କିନ୍ତୁ ଫୁଲିଲା ଫୁଲିଲା ଦିଶୁଥିଲା । କିଛି କୋଉଠି ନ ଘଟିଲା ପରି ସୌଭାଗ୍ୟ ବାପା ବୋଉଙ୍କ ଜିନିଷପତ୍ର ଗାଡ଼ିରେ ଲଦୁଥିଲେ । ଶ୍ୱଶୁର ଗୋଟାଏ ଗୋଟାଏ କରି ଜିନିଷ ତାଙ୍କ ହାତକୁ ବଢ଼େଇ ଦେଉଥିଲେ ।

ମୋ ଗୋଡ଼ହାତ ଚଳୁନଥିଲା । ଦେହର ରକ୍ତ ଶୁଖିଗଲା ଭଳି ଲାଗୁଥିଲା । ମତେ ଲାଗିଲା, ଜୀବନସାରା ମୁଁ ତାଙ୍କ ବାପାମାଆଙ୍କୁ ସୁଖୀ କରିପାରିଲି ନାହିଁ ବୋଲି ଅଭିମାନରେ ସୌଭାଗ୍ୟ ସେମାନଙ୍କୁ ଜରାନିବାସ ପଠେଇ ଦେଉଛନ୍ତି । ମୁଁ ଅନୁଭବ କଲି ଯେମିତି କୋଡ଼ିଏ ବର୍ଷର ଦାମ୍ପତ୍ୟ ଜୀବନ ନାଁରେ ମୁଁ କେବଳ ସମ୍ପୂର୍ଣ୍ଣ ସ୍ୱାର୍ଥପର ଜୀବନଟିଏ ବିତେଇଛି । ପତ୍ନୀର କର୍ତ୍ତବ୍ୟବୋଧ ଅନ୍ତରାଳରେ ଭରପୁର ଛଳନାମୟ ଜୀବନଟିଏ ହିଁ ପରିପୁଷ୍ଟ ହୋଇଛି । ବୋହୂ ପଣର ମୁଖା ଭିତରେ ମୁଁ ମୋ ଅହଂପଣର ସନ୍ତୁଷ୍ଟି ହିଁ କରିଚାଲିଛି । ସୌଭାଗ୍ୟଙ୍କ ଗଭୀର ଭଲପାଇବା ବଦଳରେ ମୁଁ ତାଙ୍କ ଜୀବନକୁ ଅନନ୍ତ ଶୂନ୍ୟତାରେ ଭରିଦେଇଛି । ମୋର ନାରୀ ଜୀବନ ବ୍ୟର୍ଥ ହୋଇଛି, ମୁଁ ଭଲ ବୋହୂଟିଏ ହୋଇପାରିଲି ନାହିଁ କି ଭଲ ପତ୍ନୀଟିଏ ବି ହୋଇ ପାରିନାହିଁ ।

ମୁଁ ନିଜକୁ ନିୟନ୍ତ୍ରଣ କରିପାରିଲି ନାହିଁ । ଗୋଟାଏ ଅଦୃଶ୍ୟ ଶକ୍ତି ଦ୍ୱାରା ପରିଚାଳିତ ହେଲାପରି ମୁଁ ପୀନୁର ଷ୍ଟଡିରୁମ୍‌କୁ ଧାଇଁଗଲି । ତା' ନୋଟ୍ ଖାତାରୁ ଫାଳେ କାଗଜ ଚିରି ତରବର ହେଇ ଦୁଇଧାଡ଼ି ଲେଖିଦେଇ ଫେରିଆସିଲି ସୌଭାଗ୍ୟଙ୍କ ପାଖକୁ । ତାଙ୍କ ହାତରେ କାଗଜଟା ଗୁଞ୍ଜିଦେଇ ମୁଁ ଆତ୍ମତୃପ୍ତିର ହସଟାଏ ହସିଲି ଓ ତାଙ୍କ ମୁହଁକୁ ଚାହିଁ କହିଲି- "ଡ୍ରାଇଭରଙ୍କୁ କୁହ ଗାଡ଼ି ଜରାନିବାସ ନୁହେଁ ଆମ ସ୍କୁଲଆଡ଼େ ନେଉ ।"

"କାହିଁକି ? ଆଉ ଏଇଟା ପୁଣି କ'ଣ ?" କାଗଜ ଖଣ୍ଡକ ଖୋଲୁ ଖୋଲୁ ସେ ଏକ୍‌ବାର ଆଶ୍ଚର୍ଯ୍ୟ ହୋଇ ଦୁଇଟାଯାକ ପ୍ରଶ୍ନ ପଚାରିଲେ ।

ମୁଁ ନୀରବ ରହିଲି ।

କାଗଜଟା ଉପରେ ଆଖି ବୁଲେଇ ଦେଇ ସ୍ଥାନ-କାଳ-ପାତ୍ର ଭୁଲି ସେ ଆନନ୍ଦରେ ଅଧୀର ହୋଇ ମୋତେ କୁଣ୍ଢେଇ ପକେଇଲେ ଓ ଶିଶୁଟିଏ ଭଳି ରଡ଼ି କରି ଡାକ ଛାଡ଼ିଲେ- "ବାପା ! ବୋଉ ! ତୁମକୁ ଆଉ ଜରାନିବାସ ଯିବାକୁ ପଡ଼ିବ ନାହିଁ । ତମ ବୋହୂ ଭିଆର୍‌ଏସ୍ ନେଉଛି । ଆମେ ସବୁ ମିଶିକରି ରହିବା । ଆରେ ପୀନୁ ! ତୁ ବି ହଷ୍ଟେଲ୍‌ରେ ରହିବୁ ନାହିଁରେ ! ମାମା ପାଖରେ ରହି ପଢ଼ିବୁ । ଜେଜେମା, ଜେଜେବାପାଙ୍କ ପାଖରେ ରହିବୁ ।

ସଦା ଗମ୍ଭୀର ପ୍ରକୃତିର ସୌଭାଗ୍ୟଙ୍କୁ ଏତେ ଖୁସି ଓ ଏତେ ପ୍ରଗଳ୍ଭ ମୁଁ ଏଇ ପ୍ରଥମଥର ଅନୁଭବ କଲି ।

ଗୋଟାଏ ଗଭୀର ଆଶ୍ୱାସପଣ ମୋ ସର୍ବାଙ୍ଗରେ ଖେଳିଗଲା । ଆତ୍ମମୁଗ୍ଧ ହୋଇ ସୌଭାଗ୍ୟଙ୍କ ବିଭୋରତାକୁ ମୁଁ ଯେମିତି ପିଇଯାଉଥିଲି !



# ନିରୁଦ୍ଦେଶ

ଟଇତୁ ଜାନୀ ଦୁଇ ହାତରେ କଅଁଳା ପାଣି ହାଣ୍ଡିର ଛୁଆଟାକୁ କୋଳେଇ ଧରି ସେମିତି ଉଦାସ ଦୃଷ୍ଟିରେ ଚାହିଁ ରହିଥିଲା ବହଳ ଅନ୍ଧକାର ଆଡ଼କୁ । ଯେଉଁଠି ଅଶରୀରୀ ପରି ହଜିଯାଇଥିଲା କନ୍ଦି, ତା' ନାତୁଣୀ, ତା' ପୁଅର ଝିଅ । ଜାନୀ ବଂଶର ସାକ୍ଷୀ ସନ୍ତକ, ତା' ବଞ୍ଚିବାର ଆଶା ଭରସା । ତା' ଦରମଲା ଆଖିର ସପନ, ଯାହାର ଲେଉଟାଣି ରାସ୍ତାକୁ ଚାହିଁ ଚାହିଁ ବୁଢ଼ାବୁଢ଼ୀ ଦୁଇଟା ଜୀଇଁ ରହିଥିଲେ ଦୁନିଆଁରେ । ଜନମକଲା ଜୁଆନ୍ ଟୋକାଟା ସୁନାଧର । ଆନ୍ଧ୍ରା ଯିବ ଆନ୍ଧ୍ରା ଯିବ ବୋଲି ବାୟାବାତୁଳ ହେଲା । ବୁଢ଼ା କେତେ ନେହୁରା ନିଉଛାଳି ହେଲା, ଏଇ ବଣ ପରବତ, ଏଇ ମାଟି ଆମ ମାଆ ବାପ । ସାହୁକାର ରଣ ବୋଝ ମାଡ଼ି ବସିଲା ତ କ'ଣ ହେଲା ? ଏଇଠି ତା' ଘରେ ବାପପୁଅ ଗୋଟି ରହି ରଣ ଶୁଝିଥାନ୍ତେ । ବାପ ଗୋସାପ ଅମଳରୁ ସେୟା ହିଁ ତ ସେମାନେ କରି ଆସୁଛନ୍ତି । ସାଉକାର ଜମିକୁ ହଳ ନେଇଥାନ୍ତେ । ଧାନ, ମାଣ୍ଡିଆ, ମକା, ମୁଗ, ବିରି, କୋଳଥ ଫଳେଇଥାନ୍ତେ । ତା' ଗାଈମଇଁଷି ଚରେଇ ଥାନ୍ତେ । ତା' ଗାଡ଼ି ମଟରରେ ଖଲାସୀ କାମ କରି ରଣ ଶୁଝିଥାନ୍ତେ ବାପପୁଅ । ମାନିଲା ନାହିଁ, ଆଜିକାଲିକା ପିଲା । ସାଉକାରର ନାଲି ଆଖି ତଳେ କାମ କରିବାକୁ ଆଉ ପସନ୍ଦ କଲା ନାହିଁ । ତାକୁ ଘାରିଲା ବିଦେଶ ନିଶା । ଗୁତାରେ ଇଟାକାମ କରିବ । ଯେତେ ଇଟା ଗଢ଼ିବ ସେତେ ପଇସା । ଦିନରାତି ଏକା କରି ଇଟା ଗଢ଼ି ଗଣିଦେବ କଣ୍ଟ୍ରାକ୍ଟରକୁ । କି କର୍ଣ୍ଣ ମନ୍ତ୍ର ସେ କୁଲି କଣ୍ଟ୍ରାକ୍ଟର ଦେଲା ଯେ ଦିନରାତି ସପନ ଦେଖିଲା । ଆନ୍ଧ୍ରା ଯିବ । ପଇସା ରୋଜଗାର କରିବ । ସାଉକାର ରଣ ଶୁଝିବ । ବହୁତ ପଇସା ଜମେଇବ । ନିଜେ ବଡ଼ ଲୋକ ହେବ ।

ଟଇତୁ ଶୁଆକୁ ପଢ଼େଇଲା ପରି ପୁଅକୁ କାନେ କାନେ କହିଲା- ଆମେ ଜାନୀ ଲୋକ । ପାହାଡ଼ ଡଙ୍ଗର ବଣ ଥିଲେ ଆମର ସବୁ ଅଛି । ଏଇ ମାଟି ମାଆର ମାୟା ମମତା ଆମ ବାପଅଜା ଛାଡ଼ି ନଥିଲେ କି ଲୋଡ଼ା ପଡ଼ିଛି ଆମର ଜନମ ମାଟି ଛାଡ଼ି ବିଦେଶ ଯିବା । କି ଲୋଡ଼ା ଆମର ଧନ ଦରବରେ ? ଟଙ୍କା ପଇସାରେ ବୁଢ଼ା ବାପର କଥାକୁ ଖାତିର କଲାନାହିଁ । ସେଦିନ ମୁହଁ ଅନ୍ଧାରରେ ବାପ ହାତରେ ଟଙ୍କା ତିନି ଶହ

ଗୁଞ୍ଜିଦେଇ କହିଲା ଆପ୍ପାରାଓ ଦେଇଛି । ତୁ ଏତକ ରଖିଥା । ମୁଁ ଦୁଇଶହ ଟଙ୍କା ଧରିଯାଉଛି । କନ୍ଦି ଆଉ ଚନ୍ଦିରି ତତେ ଲାଗିଲେ । ବରଷ ଗୋଟାକରୁ ବେଶି ରହିବି ନାହିଁ । ସଅଳ ସଅଳ ଫେରି ଆସିବି ।

ଚଇତୁ ଆଖିରୁ ଠକ୍‌ଠକ୍ ଦୁଇଧାର ଲୁହ ତା ରାଡୁଆ ଗାଲ ଉପର ଦେଇ ଗଡ଼ିଗଲା । ତା' ମଳିଚିଆ ଗାମୁଛାରେ ଲୁହ ଦୁଇଧାରକ ପୋଛି ଦେଇ କହିଲା- ହଉ- ଯା ! ମୁଁ ମେରିଖୁଣ୍ଟ ପରି ଜଗିଛି ତୋ ଘର, ତୋ ପିଲା ମାଇଜୀକୁ ! ଆଇଲା ପୁଷ୍ ପରବ ଡେଇଁବୁ ନାଇଁ । ଫେରିଆସିବୁ ।

କୁକୁଡ଼ା ଡାକିବା ବେଳେ କୁଲି କଣ୍ଟ୍ରାକ୍ଟର ଆପ୍ପାରାଓର ମାଟାଡୋର ଗାଡ଼ି ଲାଗିଲା ଗାଁ ମୁଣ୍ଡରେ । ଆଖପାଖ ଦଶଖଣ୍ଡି ଗାଁର ଭେଣ୍ଡିଆ ପିଲା ଭର୍ତ୍ତି ହେଇଥିଲେ ସେଥିରେ । ଆପ୍ପାରାଓର କଡ଼ା ତାଗିଦ୍ । ରାଟୁ କର ନାହିଁ । ଚୁପ୍‌ଚାପ୍ ବସ । ସରକାର ଘର ଜାଣିଲେ ସବୁ ମାରା । ଭେଣ୍ଡାଗୁଡ଼ାକ ବସିଥିଲେ ମୂଷା ପରି । କୁଙ୍କୁରି କାଙ୍କୁରି । ସତେ ଅବା ଚୋର କି ଖୁନୀ ଆସାମୀ । ପୁଲିସ୍ ଗାଡ଼ିରେ ଯାଉଛନ୍ତି ଥାନାକୁ, ହାତରେ ହାତକଡ଼ି ପଡ଼ିଛି । ସେଇ ଗାଡ଼ିରେ ସୁନାଧର ଗଲା ଯେ ଗଲା ଆଉ ଫେରିଲା ନାହିଁ । ପାଞ୍ଚ ବରଷ ବିତିଗଲା । ବୁଢ଼ାବୁଢ଼ୀଙ୍କ ଆଖିରୁ ପାଣି ମଲା । ବୟସ ଥିବା ମାଇପିଟା ଆଉ କେତେ କାଳ ତା ବାଟ ଚାହିଁ ବସିଥାନ୍ତା ? ସାତ ବରଷର ଝିଅ କନ୍ଦିକୁ ବୁଢ଼ାବୁଢ଼ୀଙ୍କ ବେକରେ ଛନ୍ଦି ତିନି ପିଲାର ବାପ ଡମ୍ବରୁ ଶୁଣ୍ଢୀ ସାଙ୍ଗରେ ଘର ସଂସାର କଲା । ପଛକୁ ଫେରି ଚାହିଁଲା ନାହିଁ ।

ବୁଢ଼ା ମୁଣ୍ଡରେ ବଜ୍ର ପଡ଼ିଗଲା । ବାପ ମାଆ ଛେଉଣ୍ଡ ପିଲାଟାକୁ କେମିତି ମଣିଷ କରିବ ? ପୁଅ ଉପରେ ରାଗିଲା ନାହିଁ । ବୋହୂକୁ ଅଭିଶାପ ଦେଲା ନାହିଁ । କୋଳକୁ ଉଠାଇନେଲା କନ୍ଦିକୁ । ତା'ର ବୋହି ଯାଉଥିବା ଲୁହଲାଳକୁ ଗାମୁଛା କାନିରେ ପୋଛି, ଛାତିରେ ହାତ ବାଡ଼େଇ କହିଲା- "ତୁନି ହ' ଟୋକୀ । ମୁଇଁ ଅଛି, ତୋ'ର ଦାଦି ଚଇତୁ ଜାନୀ ଅଛି । ତତେ ମୁଇଁ ପୋଷିବି । ବଡ଼ କରିବି । ଯିଏ ଯୁଆଡ଼େ ଯାଆନ୍ତୁ । ଜାନୀବୁଢ଼ା କାହାକୁ ଖାତିର୍ କରେନାହିଁ । ଉପରେ ଆକାଶ ଅଛି । ତଳେ ଦାର୍‌ନୀ ମାଆ ଅଛି । ସେଇ ତୋର ବାପମାଆ । ସେଇ ମୋର ବାପ ମାଆ । ଦେଶ ଦୁନିଆ ଯାକର ବାପ ମାଆ । ତାଙ୍କରି ଦୟା ଧରମରେ ଏ ସଂସାର ଚାଲିଛି, ସେମାନେ କ'ଣ ତୋ ତୁଣ୍ଡ ପାଇଁ ମୁଠାଏ ଦାନା, ତୋ ପିଠି ପାଇଁ ଖଣ୍ଡେ କନା ଦେବେ ନାଇଁ ଲୋ ଟୋକୀ !" ସାତ ବରଷର ବାଳୁତ କନ୍ଦି ବୁଢ଼ାର ଏ ଭାଷଣରୁ କ'ଣ ବୁଝିଲା କେଜାଣି, ତା' ମୁହଁକୁ ଭଲ କରି ମୁହୂର୍ତ୍ତେ ଚାହିଁଲା ଆଉ ତା'ର କୁନି କୁନି ବାହୁ ଦୁଇଟା ବୁଢ଼ାର ବେକ ଚାରିପଟେ ଗୁଡ଼େଇ ଦେଇ ଭେଁ କିନା ରଡ଼ିଟାଏ ଦେଲା । ବୁଢ଼ା ତାକୁ କାନ୍ଧରେ ପକାଇ ଥାପୁଡ଼େଇ ଦେଲା । ଘଡ଼ିକ ଭିତରେ ସିଏ ଛୁଟ୍‌କିନା ଶୋଇ ପଡ଼ିଲା ।

ବୁଢ଼ା ପୁଣିଥରେ ସେଇ ବିତିଯାଇଥିବା ଦିନଗୁଡ଼ାକୁ ରୋମନ୍ଥନ କଲା । ଏଇ କାଲି ପରି ମନେହେଉଛି, ଗୋଟିଏ କିଏ ବିଦେଶୀ ବାବୁ ଆସିଥିଲା ଏ ଗାଁକୁ । ମୁହଁ ଭର୍ତ୍ତି ଦାଢ଼ୀ, ବେକ ପାଖରୁ ଆଣ୍ଠୁ ତଳ ପର୍ଯ୍ୟନ୍ତ ଲମ୍ବିଥିବା ଜାମା ଖଣ୍ଡିଏ । କାନ୍ଧରେ ଝୁଲା ବେଗ୍ । ତା' ନିରୀହ ଆଖି ଦୁଇଟାରେ ଯେମିତି ଥିଲା ସଂସାର ଯାକର ଦୁଃଖକୁ ହରଣ କରିବାର ମାୟା । ବୁଢ଼ା ତା'ରି ଆଗରେ ବଖାଣି ବସିଲା ନିଜର ଦୁଃଖ । ପୁଅ ଦାଦନ ଯିବାର ଅବସୋସ । ବୋହୂ ଘର ଛାଡ଼ି ଚାଲିଯିବାର କ୍ଷୋଭ । ସାତ ବରଷର ଝିଅର ଅନିଶ୍ଚିତ ଭବିଷ୍ୟତର ଆଶଙ୍କା । ସେଇ ବିଦେଶୀବାବୁ ବୁଢ଼ା ନାଁରେ ବାର୍ଦ୍ଧକ୍ୟ ଭତ୍ତାଟିଏ କରିଦେଇଥିଲା । ଆଉ କନ୍ଦିକୁ ସହରରେ ପାଠ ପଢ଼ାଇବାର ବ୍ୟବସ୍ଥା ବି । ବୁଢ଼ା ନାତୁଣୀକୁ ନିଜେ କାନ୍ଧରେ ଧରି ସେଇ ବାବୁ ସାଙ୍ଗରେ ଯାଇ କନ୍ୟାଶ୍ରମରେ ଛାଡ଼ି ଆସିଥିଲା । ପାଠ ପଢୁଥିଲା କନ୍ଦି । ଫି ବରଷ ଖରାଛୁଟିରେ ରସ ପେଡ଼ିଟିଏ ଧରି ସେ ଗାଁକୁ ଆସୁଥିଲା । ତା' ସଫାସୁତୁରା ବେଶ ପୋଷାକ, ତେଲ ନିଗିଡ଼ିଲା ଦେହ, କଳା ମଚମଚ କେଶରାଶି, ପାଦରେ ଯୋତା ଚପଲ ଦେଖି ବୁଢ଼ା ମନ ପୂରି ଯାଉଥିଲା । ସୁନାଧର ପଇସା ରୋଜଗାର କରିବାର ସପନ ଦେଖୁ ଦେଖୁ କୁଆଡ଼େ ହଜିଗଲା ସିନା ତା' ସପନ ସତ ହବ । ତା' ଝିଅ ସାଇବାଣୀ ହବ । ଗାଡ଼ି ମଟରରେ ବୁଲିବ । ବୁଢ଼ାର ଛାତି କୁଣ୍ଢେମୋଟ ହୋଇଯାଉଥିଲା ।

କନ୍ଦିର ସ୍କୁଲ ପାଠ ସରି ନଥିଲା । ଦିନେ ସିଏ ଆସି କହିଲା- ଦାଦୀ ! ଏଇ ବରଷଟା ସରିଗଲେ ମୁଁ କଲେଜରେ ପଢ଼ିବି । ସେଇଟା ବଡ଼ ଇସ୍କୁଲ । ବୁଢ଼ା ଆଖି ଟେକି ଚାହିଁଲା କନ୍ଦିକୁ ।

ଜୁଆନ୍ ଟୋକୀ । ଦେହରେ ମାଉଁସ ଲହଡ଼ି ଖେଳୁଛି । ସହରକୁ ଯାଇ ନଥିଲେ, ପାଠ ପଢ଼ି ନଥିଲେ ଦୁଇପିଲାର ମାଆ ହେଇ ସାରନ୍ତାଣି । ବୁଢ଼ା କହିଲା- ଜୁଆନ୍ ହେଲୁ । ବିଭା ହେବୁ ନାଇଁ ? ଘର ସଂସାର କରିବୁ ନାଇଁ ?

ହସି ହସି ଗଡ଼ିଗଲା କନ୍ଦି । ସେମିତି ହସୁ ହସୁ କହିଲା- ଆହୁରି ପାଠ ପଢ଼ିବି ଦାଦୀ ! ପାଠ ପଢ଼ିସାରି ଆଗ ଚାକିରି କରିବି । ପଇସା ରୋଜଗାର କରିବି । ତୋ ପାଟି ପାକୁଆ ହୋଇଗଲାଣି । ତୋ ପାଟିରେ ସୁନା ଦାନ୍ତ ଲଗେଇ ଦେବି । ତା'ପରେ ବିଭା ।

ବୁଢ଼ା ଛାତିରୁ ସତେ ଅବା ପଥର ଖଣ୍ଡେ ଖସିପଡ଼ିଲା । ଏମିତି ସ୍ୱପ୍ନ ଦେଖୁଥିଲା ସୁନାଧର, ଆନ୍ଧ୍ରା ଯିବି, ବେଶି ପଇସା ରୋଜଗାର କରିବି । ସାଉକାର ଘର ଋଣ ଶୁଝିବି । ବାବୁଘର ଲୋକଙ୍କ ପରି ଖାଇବି, ପିନ୍ଧିବି । ଏଇ ସପନ ତା'ର କାଳ ହେଲା । ଗଲା ଯେ ଗଲା, ଆଉ ବାହୁଡ଼ିଲା ନାହିଁ । ଅନ୍ୟମନସ୍କ ହୋଇ ପଡ଼ିଲା ଚଇତୁ । କନ୍ଦି ଚଇତୁର କାନ୍ଧ ଦୁଇଟାକୁ ଝାଙ୍କି ଦେଇ କହିଲା- କ'ଣ ଏତେ ଭାବୁଛୁ ଦାଦୀ ? ମତେ ବିଶ୍ୱାସ କରୁନୁ ? ବୁଢ଼ା ଦୁଇ ହାତ ଯୋଡ଼ି ମୁଣ୍ଡରେ ଲଗେଇଲା ଆଉ ମନର କୋହକୁ ମନରେ ଚାପି କହିଲା- ସେଇ ଉପରବାଲା ଚାହିଁଲେ ସବୁ ହବରେ ନିନି ! ତୁଇ କିଏ ନା ମୁଇଁ କିଏ ?

ଏଇ ଥିଲା କନ୍ଦି ଓ ଚଇତୁଙ୍କାନୀଙ୍କ ଭିତରେ ଶେଷ କଥାବାର୍ତ୍ତା । ତା'ପରେ କନ୍ଦି ନିଖୋଜ ହୋଇଗଲା ।

କନ୍ଦିର ନିଖୋଜ ଖବର ବୁଢ଼ା ପାଖରେ ପହଞ୍ଚିଲା ବେଳକୁ ଦୁଇ ମାସ ହେଇ ସାରିଥିଲା । ଟିଭି ରେଡିଓ ସମ୍ବାଦପତ୍ରମାନଙ୍କରେ ତା' ଫଟୋ ଛପା ସରିଥିଲା । ତାକୁ ପୋଲିସ୍ ଖୋଜୁଥିଲା । ଅଙ୍ଗନୱାଡ଼ି ଦିଦି ଚଇତୁକୁ ଦେଇଥିଲା ଏ ଖବର ।

ଚଇତୁ ସବୁ ଶୁଣିଲା । ତାଙ୍କ ସମାଜରେ ଝିଅ ନିଖୋଜ ହେବା ଶୁଭର କଥା । ପୁଅଝିଅ ରାଜି ତ ଉଦ୍‌ଲିଆ ଯିବେ । ପଇସା ମୁଣ୍ଡି ଯିବେ । ବାପାମାଆ ବନ୍ଧୁ କୁଟୁମ୍ବ ଧରି ସେମାନଙ୍କୁ ଖୋଜି ଆଣିବେ । ଟିଭି ଖବରକାଗଜରେ କାହିଁକି ତା' ନାଁ ବାହାରିଛି, ପୋଲିସ୍ କାହିଁକି ତାକୁ ଖୋଜୁଛି ? ବୁଢ଼ା ମଗଜରେ କିଛି ପଶିଲା ନାହିଁ । ବଣମୁଲକ ମଣିଷର ବାଘଭାଲୁକୁ ଯେତିକି ଡର ନାଇଁ, ସେତିକି ଡର ପୋଲିସ୍ ଫରେଷ୍ଟିକୁ । ସେ ଟିକେ ଚିନ୍ତିତ ହେଇପଡ଼ିଲା ।

ତଥାପି ସେ ବ୍ୟସ୍ତ ହେଲା ନାହିଁ । ଭୋ' ଭୋ' ହେଇ କାନ୍ଦିଲା ନାହିଁ । ଅଙ୍ଗନୱାଡ଼ି ଦିଦିର ମୁହଁକୁ ଟିକେ ଚାହିଁଲା ଆଉ ଖୁବ୍ ଗୋଟାଏ ଆତ୍ମବିଶ୍ୱାସର ସହ କହିଲା- "କନ୍ଦି ଉଦ୍‌ଲିଆ ଯାଇଛି ।"

ଅଙ୍ଗନୱାଡ଼ି ଦିଦି ଠିକ୍ ଠିକ୍ ବୁଝାଇ ପାରିଲା ନାହିଁ ଚଇତୁକୁ । ବରଂ ଦିଦିର ବ୍ୟସ୍ତଭାବ ଦେଖି ସେ ଟିକିଏ ହସି ଦେଲା ଓ ଆତ୍ମତୃପ୍ତିର ଭାବ ନେଇ କହିଲା- ଶେଷକୁ ଟୋକୀଟା ମୋରି କଥା ମାନିଲା । କେତେଦିନ ଏ ଯୁବା ବୟସକୁ ଫାଙ୍କି ଫାଙ୍କି ଚାଲିଥିବ ? ଶେଷକୁ ଉଦ୍‌ଲିଆ ଗଲା । ସିଏ କ'ଣ ଆଉ ଏଇ ଦେଶୀଆ ମୁର୍ଖ ମଳିମୁଣ୍ଡିଆକୁ ବିଭା ହେଇଥା'ନ୍ତା ଏତେ ପାଠଶାଠ ପଢ଼ି ? ସିଏ ଆସିବ । ଏଇ ପୁଷ୍ ପରବକୁ ତା' ବରକୁ ନେଇ ସେ ନିଶ୍ଚୟ ଆସିବ । ମଟରଗାଡ଼ି ଚଢ଼ି ଆସିବ ।

ଅଙ୍ଗନୱାଡ଼ି ଦିଦି ବୁଢ଼ାର ବିଶ୍ୱାସକୁ ଭାଙ୍ଗିବାକୁ ଚାହିଁଲା ନାହିଁ । କନ୍ଦି ଆସିଲା ନାହିଁ । କନ୍ଦିକୁ ଅପେକ୍ଷା କରି କରି ବୁଢ଼ାବୁଢ଼ୀଙ୍କ ଆଖିରୁ ପାଣି ମଲା ।

କନ୍ଦି ପୁଷ୍ ପୁନେଇଁରେ ଆସିଲା ନାହିଁ । ମଣ୍ଡେଇଟା ବି ଶୁଖିଲାରେ କଟିଲା । କନ୍ଦି ଆସିଲା ନାହିଁ କି କିଛି ଖବର ଦେଲା ନାହିଁ । ବେଳେବେଳେ ଚଇତୁ କ୍ରୋଧରେ ଅଜ୍ଞାନ ହୋଇଯାଏ । ସବୁତକ ରାଗ ବୁଢ଼ୀ ଉପରେ ସାରେ । ବଡ଼ପାଟିରେ କହେ, ବାପା ମାଆ ଛାଡ଼ି ଦେଇ କିଏ କୁଆଡ଼େ ଗଲେ ଯେ ବୁଢ଼ାବୁଢ଼ୀ ଦି'ଟା ଥିଲୁ ବୋଲି ତା' ମୁହଁରେ ଢୋକେ ଦେଇ ବଞ୍ଚେଇଲୁ । ଏବେ ମୁଣ୍ଡକୁ ହାତ ପାଇଲାରୁ ବୁଢ଼ାବୁଢ଼ୀ ମଲେ କି ହଜିଲେ ଖୋଜିବାକୁ ନାଇଁ । ଗୋଟିଏ ଲାଉର ମଞ୍ଜି ତ । ଆସୁ ସେ ଟୋକୀ । ତା' ମଜା ଯଦି ନ ଛଡ଼େଇବି, ମତେ ଚିହ୍ନିବ ।

ବୁଢ଼ାବୁଢ଼ୀଙ୍କ ସକଳ ମାନ ଅଭିମାନ ବ୍ୟର୍ଥ ହୁଏ । ମୁହୂର୍ତ୍ତ ମହୂର୍ତ୍ତ, ଘଣ୍ଟା ଘଣ୍ଟା, ଦିନ ଦିନ, ମାସ ମାସ ବିତିଗଲାଣି ଏ ଭିତରେ ।

କନ୍ଦିର ପତ୍ତା ନାହିଁ । ଚଇତୁର ଧୈର୍ଯ୍ୟ ତୁଟିଲାଣି । ଏବେ ସେ ବୁଝୁଛି, ସେଦିନ ଅଙ୍ଗନଓ୍ୱାଡ଼ି ଦିଦିକୁ ସେ କନ୍ଦିର ନିଖୋଜ ଖବର ଅଶୁଭ ନୁହେଁ ବୋଲି ବୁଝେଇଲା ବେଳକୁ କାହିଁକି ଦିଦିଟାର ମୁହଁ ଏମିତି କରୁଣାକ୍ତ ଦିଶୁଥିଲା । ବୁଢ଼ାବୁଢ଼ୀ କନ୍ଦିର ଫେରିବା ରାସ୍ତାକୁ ଚାହିଁ ବସିଲାବେଳେ ସହରରେ ମୋବାଇଲ୍‌ର ଏମ୍‌ଏମ୍‌ଏସ୍‌ରେ ଘୁରିବୁଲୁଥିଲା କନ୍ଦିର ନଗ୍ନ ଫଟୋଚିତ୍ର । ସହରର ସିଡ଼ି କ୍ୟାସେଟ୍ ଦୋକାନ ଜବତ୍ କରି କନ୍ଦିର ଅଶ୍ଳୀଳ ସିଡ଼ି ଜବତ୍ କରୁଥିଲା ପୋଲିସ୍ । ନାଟକୀୟ ଭାବରେ କେତେଜଣ ଦୋକାନୀ ଆରେଷ୍ଟ ହୋଇ ବି ଖଲାସ୍ ହୋଇ ସାରିଥିଲେ । ଗଣମାଧ୍ୟମ ବି ବେଶ୍ ତତ୍ପର ହୋଇ ଉଠିଥିଲେ । ବିଧାନସଭା ହୁଲୁସ୍ଥୂଲ୍ ହେଉଥିଲା । ଘଟଣାର କେନ୍ଦ୍ରବିନ୍ଦୁ କନ୍ଦି ଆଉ ନଥିଲା । ଯେ ଯାହାର ସମାର୍ଥ୍ୟ ପ୍ରଦର୍ଶନ ପାଇଁ ପ୍ରତିଯୋଗିତା ଆରମ୍ଭ କରିଦେଇଥିଲେ । ଦୈନିକ ସମ୍ବାଦପତ୍ରମାନଙ୍କରେ ଦୃଷ୍ଟ ଅଦୃଷ୍ଟ, ଶ୍ରୁତ ଅଶ୍ରୁତ, ବ୍ୟକ୍ତ ଅବ୍ୟକ୍ତ, ସମ୍ଭାବ୍ୟ ଅସମ୍ଭାବ୍ୟ ଅନେକ ଖବର ପ୍ରକାଶିତ ହେଲା । ବିଧାନସଭା ଲାଗୁଥିଲା ଯାତ୍ରା ପେଣ୍ଡାଲ । ବିରୋଧି ଦଳ ଥିଲେ ହୀରୋ ।

ପୋଲିସ୍ ବିଭାଗ ବି ନୀରବ ରହି ନଥିଲା । ତଦନ୍ତ କମିଶନ ବସାଉଥିଲା । କନ୍ଦିକୁ ଖୋଜି ବାହାର କରିବା ପାଇଁ ସ୍ୱତନ୍ତ୍ର ସ୍କ୍ୱାର୍ଡ ଗଠନ କରୁଥିଲା । ଘଟଣାର ଗୁରୁତ୍ୱ ଉପଲବ୍ଧି କରି ଘନଘନ ଜରୁରୀ ବୈଠକ ଆହ୍ୱାନ କରୁଥିଲା ।

ଏସବୁ କିନ୍ତୁ କନ୍ଦି ପର୍ଯ୍ୟନ୍ତ ପହଞ୍ଚି ପାରୁନଥିଲା । ସିଏ ସେତେବେଳକୁ ପାହାଡ଼ ଶିଖରର ଗୋଟିଏ ପରିତ୍ୟକ୍ତ କୁଡ଼ିଆରେ ଅଖିଆଅପିଆ ପଡ଼ି ରହିଥିଲା । ତା' ଆଖିରେ କଳାପଟି ଦିଆଯାଇଥିଲା । ଦଉଡ଼ିଆ ଖଟିଆରେ ତା'ର ଗୋଡ଼ ଶକ୍ତ ପ୍ଲାଷ୍ଟିକ୍ ଦଉଡ଼ିରେ ବନ୍ଧା ହୋଇଥିଲା । ନିଶା ଔଷଧର ପ୍ରଭାବରେ ସେ ଅର୍ଦ୍ଧଚେତନ ଅବସ୍ଥାରେ ରହୁଥିଲା ଓ କେତେବେଳେ ସମ୍ପୂର୍ଣ୍ଣ ଚେତାହୀନ ହୋଇପଡୁଥିଲା । ସେଇ ଅଚେତନ ଓ ଅର୍ଦ୍ଧଚେତନ ଅବସ୍ଥାରେ ବି ସେ ଅନୁଭବ କରୁଥିଲା ବେଓ୍ୱାରିସ୍ ସମ୍ପତ୍ତି ଭଳି ତା' ଶରୀର ଉପରେ ଝାମ୍ପି ପଡୁଥିଲେ କେତେଗୁଡ଼ାଏ ହିଂସ୍ର ପଶୁ । ଜଣକ ପରେ ଜଣେ ତା' ମାଂସ ଝୁଣି ଖାଇ ଯାଉଥିଲେ । ଗୋଟାଏ ଦୁଇଟା ଚିହ୍ନାସ୍ୱର ବି ସେ ଅନୁଭବ କରୁଥିଲା । ଯେଉଁ ସ୍ୱରଟାର ତୀବ୍ରତା ତାକୁ ବେଶୀ ଆକ୍ରାନ୍ତ କରୁଥିଲା ସେ ସ୍ୱରକୁ ଚିହ୍ନିବା ପାଇଁ ସେ ପାରୁପର୍ଯ୍ୟନ୍ତ ଚେଷ୍ଟା କରି ସଫଳ ହୋଇଥିଲା । ସେ ଯେ ବଡ଼ ଦିଦିଙ୍କ ପୁଅ ଛଡ଼ା ଆଉ କେହି ହୋଇ ନ ପାରେ ଏହା ସେ ବନ୍ଦ ଆଖିରେ ବି ନିଶ୍ଚୟ କରି ନେଇଥିଲା । ତା' ସହ ସଂଲଗ୍ନ ଗୁଡ଼ାଏ ଘଟଣା ତା' ଆଖି ଆଗରେ ନାଚି ଯାଉଥିଲେ । ଏ ବର୍ଷଟା ସରିଗଲେ କଲେଜରେ ପଢ଼ିବାର ସ୍ୱପ୍ନ ତାକୁ ଅସ୍ଥିର କରୁଥିଲା । ଦାଢ଼ୀବୁଢ଼ା ଆଖିରେ ବି ମେଞ୍ଚାଏ ସ୍ୱପ୍ନ ଖୁନ୍ଦି ଦେଇ ସେ ଆସିଥିଲା । ସେ ଖୁବ୍ ସିରିୟସ୍ ହୋଇ ପଡ଼ିଲା ପଢ଼ାପଢ଼ିରେ ।

ସେଦିନ ରବିବାର ଥିଲା । ବଡ଼ଦିଦି ଦୁଇ ବାଲ୍ଟି ଲୁଗା ସର୍ଫରେ ବତୁରେଇ ଥିଲେ । ସେଦିନ ଲୁଗା କାଚିବାର ପାଳି ଥିଲା କନ୍ଦିର, ଦିଦି ଦୁଇଥର ଖବର ପଠେଇ ସାରିଲେଣି । କନ୍ଦି ଯାଇନାହିଁ । ତୃତୀୟ ଥରକୁ କନ୍ଦି ସିଧାସଳଖ ମନା କରିଦେଲା । ତା'ର ମେଟ୍ରିକ୍ ପରୀକ୍ଷା । ସିଏ ଆଜିଠାରୁ ଆଉ ଲୁଗା କାଚି ପାରିବ ନାହିଁ ।

ବଡ଼ଦିଦିଙ୍କ ମୁଣ୍ଡକୁ ପିତ୍ତ ଚଢ଼ିଗଲା । ସେ ତମ୍ ତମ୍ ହୋଇ ପଶିଆସିଲେ କନ୍ଦି କୋଠରୀକୁ । ରବର ବ୍ୟାଣ୍ଡଟିଏ ଲଗେଇ ପଛକୁ ଛାଡ଼ିଥିବା ତା' କେଶ କେରାକୁ ଦୁଇ ଝିଙ୍କା ଦେଇ କହିଲେ- କୋଉ ଗଭର୍ଣ୍ଣରଟାଏ ହେଇଚୁ ଯେ ଲୁଗା ଦି'ଖଣ୍ଡ କାଚିପାରିବୁ ନାହିଁ ?

କନ୍ଦି ପାଇଁ ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଥିଲା ଏ ଘଟଣା । ସେ ସ୍ତବ୍ଧ ହୋଇଗଲା । ବଡ଼ଦିଦିଙ୍କ ଉଗ୍ରମୂର୍ତ୍ତି ଦେଖି ଅନ୍ୟ ପିଲାମାନେ ଭୟାତୁର ହୋଇ ପଡ଼ିଲେ । କନ୍ଦି ମୁହଁ ଖୋଲିଲା । ସମ୍ପୂର୍ଣ୍ଣ ନିସ୍ତରଙ୍ଗ କଣ୍ଠରେ କହିଲା- ମୁଁ ଗଭର୍ଣ୍ଣର ନୁହେଁ, କିନ୍ତୁ ଆପଣଙ୍କ ଚାକରାଣୀ ନୁହେଁ । ଏଠିକୁ ଆମେ ପାଠ ପଢ଼ିବାକୁ ଆସିଛୁ । ଲୁଗା କାଚିବାକୁ ନୁହେଁ ।

ବଡ଼ ଦିଦିଙ୍କ ଅହଂ ଉପରେ ଯେମିତି କେହି ହାତୁଡ଼ି ପାହାରଟାଏ ବସେଇ ଦେଲା । ସେ ବିସ୍ଫୋରଣଟାଏ କଲେ । କନ୍ଦି ଗାଲରେ ଠାଏ ଠାଏ ଦୁଇଟା ଚଟକଣା ବସେଇ ଦେଇ କହିଲେ- ବଦ୍‌ମାସ୍ ! ଜବାବ ଦେଉଛୁ ? ରହ ରହ ତତେ ଦେଖୁଛି । ଝଡ଼ ପରି ବାହାରକୁ ବାହାରି ଗଲେ ବଡ଼ଦିଦି ।

ସେଦିନ କନ୍ଦି ମଧ୍ୟାହ୍ନ ଭୋଜନ କଲା ନାହିଁ ।

ସନ୍ଧ୍ୟା ପ୍ରାର୍ଥନାରେ ବି ଯୋଗ ଦେଲାନାହିଁ ।

ଲଜ୍ଜା ଓ ଅପମାନରେ ସେ ଅତିଷ୍ଠ ହୋଇପଡୁଥିଲା । ସେ କାନ୍ଦୁ ନଥିଲା । ତା' ଆଖିରୁ ନିଆଁ ବାହାରୁଥିଲା ।

ବର୍ଷ ବର୍ଷର ଅବଦମିତ ଅଙ୍ଗନିଭା ଅନୁଭବ ତାକୁ ଅସହିଷ୍ଣୁ କରି ଦେଉଥିଲା ବେଳକୁ ବେଳ । ସେ ଉତ୍ତେଜିତ ହୋଇ ଉଠୁଥିଲା । ତା'ର ଉପାୟହୀନତାରେ ସେ କେତେବେଳେ ଅସହାୟବୋଧ କରୁଥିଲା ତ ପୁଣି କେତେବେଳେ ସମାଧାନର ସୂତ୍ରଟିଏ ଖୋଜିବାର ଉତ୍ତେଜନାରେ ଅସ୍ଥିର ହୋଇ ପଡୁଥିଲା ।

ରସ ଥାଳିଟିରେ ଭାତ, ଡାଲି, ମୂଳା ଭଜା ସାଙ୍ଗକୁ ପିଆଜ ଓ ଲଙ୍କାଟିଏ ଆଣି ତା' ପାଖରେ ଥୋଇ କହିଲା କଳାବତୀ, ନେ ଖା ! କେତେଦିନ ଏମିତି ନ ଖାଇ ନ ପିଇ ପଡ଼ି ରହିବୁ ? ତୁ ନ ଖାଇଲେ ସୃଷ୍ଟି ପ୍ରଳୟ ହେଇଯିବ ବୋଲି କାହିଁକି ଭାବୁଛୁ ?

ତୋ ନିଜ ପାଇଁ ଖା, ବଞ୍ଚିବା ପାଇଁ ଖା । କନ୍ଦିର ଡାହାଣ ହାତଟା ଟାଣିନେଇ କଳାବତୀ ଭାତ ଥାଳିରେ ମାଡ଼ି ଦେଲା ।

କନ୍ଦି କହିଲା- ମୁଁ ପ୍ରଳୟ କରିଦେବି ।

କଳାବତୀ ଅବିଶ୍ୱାସ ଦୃଷ୍ଟିରେ ଚାହିଁଲା କନ୍ଦିକୁ । ତା' ଆଖି ଦୁଇଟା ଜଳୁଥିଲା ଦପ୍ ଦପ୍ । କ'ଣ ହେଉଛି କନ୍ଦିର ? କୋଉ ଡୁମା ଦେବତା ସବାର ହେଇଛି କି ତା' ମୁଣ୍ଡରେ ?

କନ୍ଦି ପୁଣି ଊର୍ଦ୍ଧ୍ୱଶ୍ୱାସ ହେଲା ପରି କହିଲା- ସରକାର ଆମ ପଛରେ ମୁଠା ମୁଠା ଟଙ୍କା ସାରୁଛନ୍ତି । ଆମେ ଖାଇବୁ ଡାଲିପାଣି, ମୂଳା ଶାଗ । ଦିଦିମାନଙ୍କ ଘରେ ସବୁଦିନେ ମାଛ ମାଉଁସର ଭୋଜି । ସେଇ ଅଇଁଠା ବାସନ ମାଜିବୁ ଆମେ । ତାଙ୍କ ଲୁଗା କାଚିବୁ । ତାଙ୍କ ପିଲା ଧରିବୁ ?

କଳାବତୀ ବିଶି ଆଙ୍ଗୁଠିଟା ଦୁଇ ଓଠ ସନ୍ଧିରେ ଦେଇ କହିଲା- ଆସ୍ତେ ଆସ୍ତେ ! ହେଡ୍‌ଦିଦିଙ୍କ ଘର ଖୋଲା ଅଛି ।

ସେ ବିସ୍ଫୋରଣ କଲା ପରି କହିଲା- ଥାଉ । ମୁଁ କାହାକୁ ଡରିନି ମ !

ସେତେବେଳକୁ ରାତି ଦଶଟା ।

କନ୍ଦି ଚାରିପଟେ ବେଢ଼ି ସାରିଥିଲେ ଉପର କ୍ଲାସ୍‌ର ଝିଅମାନେ । ଗୋଟି ଗୋଟି କରି ଯେ ଯାହାର ଅଭିଯୋଗ ବୟାନ କରୁଥିଲେ । ବଡ଼ଦିଦିଙ୍କ ଅନୁପସ୍ଥିତିରେ ତାଙ୍କ କଲେଜ ପଢୁଆ ପୁଅର ଦୁର୍ବ୍ୟବହାର ଓ ଝିଅମାନଙ୍କୁ ଡାକି ଅଶ୍ଳୀଳ ସିଡ଼ି ଦେଖେଇବାଠାରୁ ଦିଦିମାନଙ୍କ ସ୍ୱାମୀମାନଙ୍କ ଗୋଡ଼ମୋଡ଼ି ଦେଉ ଦେଉ ସେମାନେ ଝିଅମାନଙ୍କର ଥାନ ଅଥାନରେ ହାତ ମାରିଦେବା ପର୍ଯ୍ୟନ୍ତ । କଥା କଥାକେ ଦିଦିମାନଙ୍କ ସ୍କୁଲରୁ ତଡ଼ିଦେବାର ଧମକ ।

ଅଧିକ ଗୋଟାଏ ଅଣ୍ଡାର ଲୋଭ ଦେଖେଇ ରାନ୍ଧୁଣିଆ ନନା ପଦ୍ମାକୁ ଅନ୍ଧାରକୁ ଟାଣିନେଇଯିବା ପ୍ରସଙ୍ଗ ବି ବାଦ୍ ପଡ଼ିଲାନି ।

ରାତିର ନିଷ୍ପତ୍ତି ଅନୁସାରେ ପଚାଶ ଜଣ ଝିଅ ସକାଳ ହେବା ଆଗରୁ ଜିଲ୍ଲା ହେଡ୍‌କ୍ୱାର୍ଟର ପାଖାପାଖି ପାହଞ୍ଚିସାରିଥିଲେ । ନେତୃତ୍ୱ ନେଇଥିଲା କନ୍ଦି ।

ଜିଲ୍ଲା ଦାୟିତ୍ୱରେ ଥିଲେ ଜଣେ ଅଣଓଡ଼ିଆ ଯୁବ ଜିଲ୍ଲାପାଳ । ଝିଅମାନଙ୍କର ଅଭିଯୋଗ ମନଯୋଗ ଦେଇ ଶୁଣିଲେ । କନ୍ଦିର ପିଠି ଥାପୁଡ଼େଇ ଦେଇ ବାହାବା ଦେଲେ । ଗାଡ଼ିରେ ସେମାନଙ୍କୁ ନେଇ ଆଶ୍ରମ ସ୍କୁଲରେ ଛାଡ଼ିଲେ । ପରିସ୍ଥିତି ନିଜେ ଉପସ୍ଥିତ ରହି ଅନୁଧ୍ୟାନ କଲେ ଓ ଅଭିଯୁକ୍ତଙ୍କ ପ୍ରତି କଠୋର ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କଲେ । କାହାକୁ ସ୍ଥାନାନ୍ତର କଲେ ତ କାହାକୁ କାର୍ଯ୍ୟରୁ ନିଲମ୍ବନ । କାହାର ଦରମା ବନ୍ଦ କଲେ ତ କାହାକୁ ସର୍ବସମ୍ମୁଖରେ ଝିଅମାନଙ୍କୁ କ୍ଷମା ମାଗିବାକୁ ନିର୍ଦ୍ଦେଶ ଦେଲେ ।

ଆଶ୍ରମ ପରିସ୍ଥିତିରେ ଆସିଲା ସୁଧାର ।

କିନ୍ତୁ କନ୍ଦି ଜୀବନରେ ଘୋଟି ଆସିଲା ଘନଘୋର ଅନ୍ଧାର ।

ଦିନେ କନ୍ଦି ପାଖରେ ସମ୍ବାଦଟିଏ ପହଞ୍ଚିଲା- ତା' ଦାଦୀ ମୃତ୍ୟୁଶଯ୍ୟାରେ । କନ୍ଦିକୁ ଦେଖିବାକୁ ଚାହୁଁଛି । ଖବରଟା କିଏ ଦେଲା, କୋଉଠୁ ଆସିଲା, କେମିତି ଆସିଲା ବୁଝିବା ପୂର୍ବରୁ କନ୍ଦି ବ୍ୟସ୍ତ ହୋଇ ଗାଁକୁ ବାହାରି ପଡ଼ିଲା । ଗାଁ ପାଇଁ ଶେଷ ଗାଡ଼ିଟା ହିଁ ଥିଲା ।

ଆଶ୍ରମଠାରୁ ବସ୍‌ଷ୍ଟାଣ୍ଡ ଦୁଇ କିଲୋମିଟର ଦୂର । ମୁହଁ ଅନ୍ଧାର ହେଇ ଆସିଲାଣି । ଦାଦୀର ରୁଗ୍‌ଣ ମୁହଁଟା ତା' ଆଖି ଆଗରେ ନାଚିଗଲା । ତାକୁ ଯିବାକୁ ହେବ । ଯେମିତି ହେଉ ଦାଦୀକୁ ଦେଖିବା ପୂର୍ବରୁ ଯେମିତି କିଛି ଅଘଟଣ ନ ଘଟେ । ଠାକୁରଙ୍କ ଉଦ୍ଦେଶ୍ୟରେ ବାରମ୍ବାର ଦୁଇହାତ ଯୋଡୁ ଯୋଡୁ ସେ ଗେଟ୍ ବାହାରକୁ ବାହାରି ସାରିଥିଲା ।

ସେଇ ଗଲା ଯେ ଗଲା । କନ୍ଦି ଆଉ ଫେରିଲା ନାହିଁ । ଆଶ୍ରମ ଫାଟକରୁ ବାହାରି ବସ୍‌ଷ୍ଟାଣ୍ଡ ଯିବା ରାସ୍ତାରେ ସେ ଭେଟିଥିଲା ଜଣେ ମଟରସାଇକେଲ ଆରୋହୀକୁ । କନ୍ଦିର ବ୍ୟସ୍ତତା ଦେଖି ସେ ତାକୁ ବସ୍‌ଷ୍ଟାଣ୍ଡରେ ଛାଡ଼ିଦେବାର ପ୍ରତିଶ୍ରୁତି ଦେଇଥିଲା । କନ୍ଦି ତରବର ହୋଇ ବସି ପଡ଼ିଥିଲା ସେ ଗାଡ଼ିରେ । ବାସ୍ ତା' ପରଠାରୁ କନ୍ଦିର ଆଉ କିଛି ମନେ ପଡ଼େ ନାହିଁ । କେମିତି ସେ ଆସିଲା ଏ ଅପନ୍ତରାକୁ ।

ମରଣ ସହ ସଂଘର୍ଷ କରୁଥିବା କନ୍ଦିର ସବୁ ସ୍ୱପ୍ନ ଭାଙ୍ଗିଗଲା । ପରିସ୍ଥିତି ପାଖରେ ନିଜକୁ ସମ୍ପୂର୍ଣ୍ଣ ଉତ୍ସର୍ଗ କରିଦେବା ଛଡ଼ା ତା' ପାଖରେ ଆଉ ଗତ୍ୟନ୍ତର ନଥିଲା । କିନ୍ତୁ ବିଧାତାର ବିଚାର ଥିଲା ଭିନ୍ନ ।

ଦିନେ କନ୍ଦି ଘନଘୋର ଜଙ୍ଗଲ ମଝିରେ, ୟୁନିଫର୍ମ ପିନ୍ଧି ହାତରେ ବନ୍ଧୁକ ଧରିଥିବା କେତେଜଣ ମଣିଷଙ୍କ ଭିତରେ ନିଜକୁ ଆବିଷ୍କାର କଲା । ସେତେବେଳକୁ ତା'ର ସମ୍ପୂର୍ଣ୍ଣ ସଂଜ୍ଞା ଫେରି ନଥାଏ । ଜଣେ ମହିଳା ତା' ମୁହଁରେ ପାଣି ଛାଟୁଥିଲା ଓ ଆଉ ଦୁଇଜଣ ମହିଳା ତା' ପାଦ ଓ ହାତ ପାପୁଲି ଘଷୁଥିଲେ । ସେହି ଅର୍ଦ୍ଧଚେତନ ଅବସ୍ଥାରେ ବି କନ୍ଦି ସେମାନଙ୍କ ଆନ୍ତରିକତାରେ, ଆତିଥେୟତାରେ, ଅନ୍ତରଙ୍ଗତାରେ ଅଭିଭୂତ ହୋଇ ପଡୁଥିଲା । ସେ ଧୀରେ ଧୀରେ ସୁସ୍ଥ ହେଲା । ପରିବର୍ତ୍ତିତ ପରିସ୍ଥିତି ସହ ନିଜକୁ ଖାପ ଖୁଆଇବାକୁ ଚେଷ୍ଟା କଲା । କଷ୍ଟ ହେଲା ନାହିଁ । ସବୁଠି ଅନୁଭବ କଲା ଅନାବିଳ ଆତ୍ମୀୟତା । ଅପର ପାଇଁ ନିଜକୁ ଉତ୍ସର୍ଗ କରିଦେବାର ପ୍ରତିବଦ୍ଧତା । ସେ ଭିନ୍ନ ମଣିଷଟାଏ ପାଲଟିଗଲା । ବଦଳିଗଲା ତା' ଜୀବନର ଲକ୍ଷ୍ୟ, ଅଭିମୁଖ୍ୟ । ତା'ଯନ୍ତ୍ରଣାଦଗ୍ଧ ଅତୀତର ପ୍ରତିଟି ଅନୁଭବ ବଦଳିଥିବା ମୁହୂର୍ତ୍ତମାନଙ୍କୁ ଆହୁରି ଉଦ୍ଦୀପ୍ତ କଲେ । ସେ ଭୁଲିଗଲା ତା'ର ଗୋଟାଏ ଘର ଥିଲା, ପରିବାର ଥିଲା, ଗୋଟାଏ ସ୍ୱପ୍ନ ଥିଲା, ଗୋଟାଏ କାମନା ଥିଲା, ନିଜ ଜୀବନ ପ୍ରତି ଗଭୀର ମମତା ଥିଲା । ସମାଜର ନିରୀହ ଅବସ୍ଥାବାଧ ମଣିଷମାନଙ୍କର ସ୍ୱପ୍ନକୁ ଛଡ଼େଇ ନେଉଥିବା, ସେମାନଙ୍କ ଜୀବନକୁ ଦୁର୍ବିସହ କରୁଥିବା ଗୁଡ଼ାଏ ସ୍ୱାର୍ଥାନ୍ଧ ସଇତାନଙ୍କର ଅଟ୍ଟହାସ୍ୟ ତାକୁ ଅସ୍ଥିର କରୁଥିଲା । ସେ ବଜ୍ର ଶପଥ ନେଲା । ସେ ଲଢ଼ିବ ସେ ପର୍ଯ୍ୟନ୍ତ, ଯେ ପର୍ଯ୍ୟନ୍ତ ଏଇ ଅପଶକ୍ତିମାନେ ସମାଜରୁ ସମ୍ପୂର୍ଣ୍ଣ ନିଶ୍ଚିହ୍ନ ନ ହୋଇଛନ୍ତି । ନିରୀହ ମଣିଷମାନେ ବଞ୍ଚିବାର ସର୍ବନିମ୍ନ ଅଧିକାର ଟିକକ ପାଇଁ କରୁଥିବା ସଂଗ୍ରାମର ଯେ ପର୍ଯ୍ୟନ୍ତ ଅନ୍ତ ନ ହୋଇଛି । ସେଇମାନଙ୍କ ଓଠରେ ହସର ମୁକ୍ତା ଫଳେଇବା ପାଇଁ ସ୍ୱତଃ ପ୍ରବୃତ୍ତ ହୋଇ ନିଜ ଜୀବନର ସ୍ୱପ୍ନ ଓ ସମ୍ଭାବନାକୁ ବାଜି ଲଗେଇ ଦେଲା ।

ସର୍ବହରାଙ୍କ ପାଇଁ ଅହରହ ସଂଗ୍ରାମ କରୁଥିବା ମଣିଷମାନଙ୍କ ସହ ଆଉ ଗୋଟିଏ ସର୍ବହରା ଏକାକାର ହୋଇଗଲା । ସେମାନଙ୍କ ଜୀବନ ସହ ଛନ୍ଦି ହୋଇ ପଡ଼ିଲା । ୟୁନିଫର୍ମ ପିନ୍ଧିଲା, ମୁଣ୍ଡରେ ଦେଲା ଟୋପି । ହାତରେ ବନ୍ଧୁକ ଚଳେଇ ଶିଖିଲା । କେମିତି ମାରିବାକୁ ହୁଏ ଶିଖିଲା । କେମିତି ମରିବାକୁ ହୁଏ ତା' ବି ଶିଖିଲା ।

ପୁଣି ଦିନେ ଅନୁଭବ କଲା କନ୍ଦି ତା' ପୃଥିବୀଟା ଧ୍ୱସ୍ତବିଧ୍ୱସ୍ତ ହୋଇଯାଇଛି । ଦୁର୍ଭାଗ୍ୟ ତା' ପିଛା ଛାଡୁନାହିଁ । ତା' ଜୀବନକୁ ନର୍କଗାମୀ କରିଥିବା ଦୁର୍ଦ୍ଦାନ୍ତମାନଙ୍କର ଅପକର୍ମର ଫଳ ସେ ଗର୍ଭରେ ଧାରଣ କରିଛି । ସେ ବିଚଳିତ ହୋଇପଡ଼ିଲା । ସତେ ଅବା ଆକାଶଟା ଛିଡ଼ି ପଡୁଛି ତା' ମୁଣ୍ଡ ଉପରେ । ଏହା ପରେ ଆତ୍ମହତ୍ୟା ଛଡ଼ା ତା'ର ଗତ୍ୟନ୍ତର ନାହିଁ ।

ଘଟଣାଟା ଅଛପା ରହିଲା ନାହିଁ । ଉପରୁ ନିର୍ଦ୍ଦେଶ ଆସିଲା କନ୍ଦି ନିର୍ଦ୍ଦୋଷ । ତା' ଗର୍ଭର ଜୀବସତ୍ତା ପାପଫଳ ନୁହେଁ । ସେ ଆଲୋକକୁ ଆସିବ । ଆଉ ଗୋଟାଏ ବଳିଷ୍ଠ ସଂଗ୍ରାମୀ ହୋଇ ଦଳକୁ ନେତୃତ୍ୱ ଦେବ । ସେଇ ଦୁର୍ଦ୍ଦାନ୍ତମାନଙ୍କୁ ଅନ୍ତ କରିବ, ଯିଏ ତା'ର ଶତ୍ରୁ, ତା' ମାଆର ଶତ୍ରୁ, ଦେଶ ଦୁନିଆର ଶତ୍ରୁ । ଆମର ଶକ୍ତି ଦରକାର, ମାନବ ଶକ୍ତି ।

ଜଣେ ମହିଳା ଓ ଜଣେ ପୁରୁଷ ଗୋଟାଏ ବର୍ଷ ପାଇଁ ଅନ୍ୟାନ୍ୟ ଦାୟିତ୍ୱରୁ ମୁକ୍ତ ହୋଇ କେବଳ କନ୍ଦିର ଦେଖାଶୁଣା ପାଇଁ ନିୟୋଜିତ ହେଲେ । ଯଥା ସମୟରେ ଦୁନିଆକୁ ଆସିଲା ପୁତ୍ର ସନ୍ତାନଟିଏ । ବଣ ଜଙ୍ଗଲର ଅସ୍ଥିର ଜୀବନଯାପନ ପ୍ରାଣାଳୀ ଶିଶୁଟିଏ ପାଇଁ ନିରାପଦ ନୁହେଁ । ଏହା ସମସ୍ତେ ଅନୁଭବ କରୁଥିଲେ ।

ଶେଷରେ ସମାଧାନର ସୂତ୍ର ଖୋଜିବା ପାଇଁ କନ୍ଦି ଉପରେ ଦାୟିତ୍ୱ ନ୍ୟସ୍ତ କରାଗଲା । ନିରାପଦ ନିଷ୍ପତ୍ତିଟିଏ ନେଲା କନ୍ଦି ।

ବର୍ଷଣମୁଖର ରାତ୍ରିଟିଏ । ଗାଁଟା ସାରା ଲୋକ ଗଭୀର ସୁଷୁପ୍ତିରେ ଅଚେତନ । ବନ୍ଦ କବାଟର ଠକ୍ ଠକ୍ ଆୱାଜରେ ଚଇତୁ ଜାନୀର ତନ୍ଦ୍ରା ତୁଟିଲା । ସେ କବାଟ ଖୋଲିବା ମାତ୍ରେ ଯୋତା ମଚ୍ ମଚ୍ କରି ଦୁଇ ତିନି ଜଣ ଲୋକ ଘର ଭିତରକୁ ଧସେଇ ଆସି ଭିତର ପଟୁ କବାଟ ବନ୍ଦ କରିଦେଲେ । ଡିବିରିର ମିଞ୍ଜି ମିଞ୍ଜି ଆଲୋକରେ ଚଇତୁ କିଛି ସ୍ପଷ୍ଟ ଦେଖିପାରୁ ନଥିଲା ।

ଧଳା ଟର୍କିସ୍‌ରେ ଗୁଡ଼ା ହୋଇଥିବା ଶିଶୁଟିକୁ ଡାହାଣ ହାତରେ ଛାତିକୁ ଆଉଜେଇ ବାଁ ହାତରେ ମୁଣ୍ଡରୁ ଟୋପି କାଢ଼ିଲା କନ୍ଦି । ଅପରାଧୀଟିଏ ପରି ନରମ ସ୍ୱରରେ କହିଲା- ଦାଦୀ, ମୁଁ କନ୍ଦି ।

ଝାପ୍‌ସା ଅନ୍ଧାରରେ ବୁଢ଼ା ଆଉ ଟିକେ ନଇଁ ପଡ଼ି ତଳୁ ଡିବିରିଟା ଉଠେଇ ନେଲା ଓ କନ୍ଦି ମୁହଁ ପାଖରେ ଟେକିଧରି ଅବିଶ୍ୱାସ୍ୟ କଣ୍ଠରେ କହିଲା- "ଏଁ ତୁ ସତ କହୁଚୁ ?"

କନ୍ଦି ଅନୁନୟ କଲା ସ୍ୱରରେ କହିଲା- "ମୁଁ ତତେ ବହୁତ କଷ୍ଟ ଦେଇଛି । ତୁ କ'ଣ ମତେ କ୍ଷମା ଦେବୁନି ଦାଦୀ ।"

ଅଭିମାନରେ ଫାଟି ପଡ଼ି ବୁଢ଼ା କହିଲା- "ନା-ନା- ମୁଁ ତୋର କେହି ନୁହଁ । ତୁ ଯା' ଚାଲି ଯା ଏଠୁ । ତୁ ବଡ଼ ଲୋକ । ତୁ ସାଇବାଣୀ । ଆମେ ଗରୀବ ବୁଢ଼ାବୁଢ଼ୀ ଦି'ଟା । କି ଲୋଡ଼ା ତୋର ଏଠି ?"

କନ୍ଦି କହିଲା- "ନା ଦାଦୀ ! ମୁଁ ସାଇବାଣୀ ହୋଇପାରିଲିନି । ମୁଁ ତୋ ପାଖକୁ ଆସିଛି ମୋତେ ଟିକେ ସାହାଯ୍ୟ କରିବୁ । ତୁ ମୋର ବାପା ମାଆ ହେଇ ମୋତେ ପାଳିଲୁ ପୋଷିଲୁ ବଡ଼ କଲୁ । ଆଉ ଗୋଟାଏ ଦାୟିତ୍ୱ ତତେ ଦେଉଛି । ମୁଁ ଜାଣିଛି ତୁ ପାରିବୁ । ତୁ ୟାକୁ ମଣିଷ କରିବୁ ।" ବୁଢ଼ା ହାତକୁ ଟର୍କିସ୍ ସହ ସେ ଛୁଆଟାକୁ ବଢ଼େଇ ଦେଲା ।

ଚିହିଁକି ଉଠିଲା ଚଇତୁ । "ମୁଁ କାହିଁକି କାହାର ଦାୟିତ୍ୱ ନେବି ? ଭଲ କରି ଖାଇ ଶିଖି ନଥିଲୁ । ତୋ ବାପାମାଆ ତତେ ଛାଡ଼ି ପଳେଇଲେ । ତତେ ପୋଷିଲି ପାଳିଲି । ତୋର ପର ଲାଗିଲା ବେଳକୁ ତୁ ଫୁର୍‌କିନା ଉଡ଼ିଗଲୁ । ପୁଣି ଗୋଟାଏ ଛୁଆର ଦାୟିତ୍ୱ ମୋତେ ଦଉଛୁ ? ମୋର କେହି ନାହାନ୍ତି ଏ ଦୁନିଆଁରେ । ମୁଁ ଏକା, ପୁରାପୁରି ଏକା । ମୋ ମଲା ହାଡ଼ରେ ଆଉ ବଳ ନାହିଁ ତମମାନଙ୍କ ସେବା କରିବାକୁ ।"

ବୁଢ଼ା ବେକରେ ଦୁଇ ହାତ ଛନ୍ଦି କନ୍ଦି କହିଲା- "ମୁଁ ସାନ ଥିବାବେଳେ ଏଇ କାନ୍ଧରେ ବସେଇ ମତେ ମଣିଷ କଲୁ । ମୋର ସବୁ ଅଳି ଅଝଟ ସହିଲୁ । ମୋର ଆଉ ଗୋଟାଏ ଅଳି ରଖିବୁ । ତୋ' ଛଡ଼ା ଏ ଛୁଆଟାର ଦେଶ ଦୁନିଆରେ ଆଉ କେହି ନାହାନ୍ତି । ମୁଁ ଜନ୍ମ ଦେଇ ବି ତା'ର ହେଇ ପାରିବିନି । ମତେ କଥା ଦେ, ତୁ ରଖିବୁ ।"

ଛୁଆଟାକୁ କାନ୍ଧରେ ପକାଇ ଭୋ' ଭୋ' କାନ୍ଦି ଉଠିଲା ବୁଢ଼ା । ଆଉ କେତେ କଷ୍ଟ ଦେବୁରେ ନିନି ! ଏଇ ମଲା ବୁଢ଼ାଟାକୁ ? ବୋହି ଆସୁଥିବା ଦୁଇଧାର ଲୁହକୁ କନ୍ଦି ସମ୍ବରଣ କରିନେଲା ।

ବୁଢ଼ା ଆଉ କିଛି କହିବା ପୂର୍ବରୁ କନ୍ଦି ବୁଲିପଡ଼ି ଅଶରୀରୀ ଭଳି ନିବିଡ଼ ଅନ୍ଧାରରେ ମିଳେଇ ଯାଇଥିଲା । ତା' ସାଙ୍ଗରେ ଆସିଥିବା ଲୋକ ଦୁଇଟା ବି ।

ଚଇତୁ ହାତରେ ଥିବା ନିଦୁଆ ଛୁଆଟା ଭିଡ଼ିମୋଡ଼ି ହୋଇ ଚିର୍‌ଚିରେଇ ଉଠିଲା । ତା' ରାତୁଆ ଛାତି ଉପରକୁ ଆଉଜେଇ ଆଣି ସେ ଥାପୁଡ଼େଇ ଦେଲା, ଯେମିତି ଥାପୁଡ଼େଇଥିଲା କନ୍ଦିକୁ, ତା' ମାଆ ଯେତେବେଳେ ତାକୁ ଛାଡ଼ି ଚାଲିଯାଇଥିଲା ।

ବୁଢ଼ାର କୋହ ତଥାପି ସମ୍ପୂର୍ଣ୍ଣ ଥମି ନଥିଲା ସେତେବେଳକୁ । ବାହାରେ ନିବିଡ଼ ଅନ୍ଧକାର । ସେଇ ଅନ୍ଧାର ଭିତରେ ବର୍ଷାର ଝାଇଁ ଝାଇଁ ଶବ୍ଦ ଗୋଟାଏ ଭୌତିକ ପରିବେଶ ସୃଷ୍ଟି କରୁଥିଲା । ଅନ୍ଧାରରେ କିଛି ଦୃଶ୍ୟ ହେଉ ନଥିଲା । ତଥାପି ବୁଢ଼ା ସେମିତି ଚାହିଁ ରହିଥିଲା କନ୍ଦିର ଫେରିବା ରାସ୍ତାକୁ ।



# ସ୍ୱପ୍ନଠାରୁ ସକାଳ ପର୍ଯ୍ୟନ୍ତ

ନଖି ବୋଉର ଗୋଡ଼ ତଳେ ଲାଗୁ ନଥିଲା । ପାଞ୍ଚ ବିଧା ମାରିଲେ ଯାହା ପାଟିରୁ ଉଁ ବୋଲି ବାହାରେ ନାଇଁ, ଅବିକଳ ବାପ ପରି ପିତା କଳା ଚେହେରା ସାଙ୍ଗକୁ ହୁଣ୍ଡୀ ଓଲମୀ ପଣର ଝିଅଟା କପାଳରେ ଯେ ଶାଶୁଘର ଲେଖାଥିଲା, ସେ କଥା ବିଶ୍ୱାସ କରିପାରୁନଥିଲା ନଖି ବୋଉ । ବାପର କୋଉ ଅଣ୍ଟାଟାଣ ଯେ ଯାନିଯୌତୁକ ଦେଇ ଝିଅର କଳା ରଙ୍ଗକୁ ଧଳା କରିଦେବ ? ରିକ୍ସା ଟାଣିଟାଣି ଯାହା ଯେତିକି ଆଣେ, ସେତକ ତ ଦିବେଳା ପେଟକୁ ନିଅଣ୍ଟ । ତେହିଁକି ପୁଣି ଦୁଇଦୁଇଟା ଝିଅ । ନଖିବୋଉ ଦୁଇ ତିନି ଘରେ ପାଇଟି କରୁ ନଥିଲେ, ଏ ସଂସାର ଚାଲନ୍ତା କେମିତି ? ଝିଅ ବାହାଘର ସପନ କେମିତି ସେ ଦେଖନ୍ତା ? ଏ ସନ ପୁଷ ମାସକୁ କୋଡ଼ିଏ ଛୁଇଁବ ନଖିକୁ । ଝିଅକୁ ଦରବୁଢ଼ୀ ହେବା ପର୍ଯ୍ୟନ୍ତ ଘରେ ରଖିବା, ସିଏ ସବୁ ବଡ଼ ବଡ଼ିଆଙ୍କୁ ସାଜେ । ଗରିବ ଖଟିଖିଆଙ୍କ ଘରେ ପରା କୋଡ଼ି ପୁରିଲେ ଝିଅ ବୁଢ଼ୀ । ସାଇ ଭାଇ ବନ୍ଧୁ କୁଟୁମ୍ବ କେଣ୍ଟା କେଣ୍ଟା କରି ଖାଇଯିବେ । ଯାହାହେଉ, ଝିଅଟା ପାଇଁ ଗୋଟିଏ କୂଳ କିନାରା ମିଳିଗଲା । ଏସବୁ ସେଇ ମଧୁଆ ଭଣ୍ଡାରୀ ପାଇଁ ସିନା । ଲୋକଟାକୁ ସମସ୍ତେ ପଇସାଲୋଭୀ, ବାରଗାଲୁଆ, ଟାଉଟ୍ର ବୋଲି କହନ୍ତି । ନଖି ବୋଉର ସେଥିରେ ଯାଏ ଆସେ କେତେ ? ଏ ଗାଁ ଲୋକ ତ ସଜମାଛରେ ପୋକ ପକାଇଦେବେ । ସେଇ କହୁଥିଲା ନଖି ଶାଶୁଘର ଭାରି ବଡ଼ଲୋକ । କାହିଁରେ କ'ଣ ! ଚାକର ପୂଜାରୀ ଗଣ୍ଡା ଗଣ୍ଡା । ତାକୁ କ'ଣ କନିଆଁ ମିଳି ନଥାନ୍ତା ? ରଜାକୁ ଖଜା ଅପୁରୁବ ? ଖାଲି ଦୋଅଡ଼ ପକ୍ଷ ବୋଲି ସିନା ସେ ପ୍ରସ୍ତାବ ପଠେଇଛି, ନହେଲେ ତୁ କିଏ ନା ସିଏ କିଏ ? ପ୍ରଥମେ ତ ମଧୁଆ କଥା ଶୁଣି ତା ଦେହରେ ଛୁରୀ ଚାଲିଯାଇଥିଲା । ମନେମନେ ରବେଇ ଖବେଇ ହେଇ କହୁଥିଲା ହଁ ମା ! ଯୁଗ ଅଚଳକୁ ସିନା ଭଉଣୀ ଜୋଇଁ ଘଇତା ! ତା ବାପର ଯଦି କାଢ ପଣ ଥାନ୍ତା ସିଏ କାହିଁକି ଦୋଭେଇ ବରରେ ଦିଅନ୍ତା । ହେଲା ଏବେ, ନଖିଟା ଟିକେ କାଳି । କି, କାଳି ଝିଅ କ'ଣ ବାହା ହେଉନାହାନ୍ତି ? କେଡ଼େ ସୁନ୍ଦର ଗଢଣ ମୋ ଝିଅର । ଠିକ୍ ନଖିମୀ ଠାକୁରାଣୀ, କର୍ମ ଅବଳକୁ ସିନା କାହିଁ କୋଉ ଅରାଇଜକୁ ଝିଅଟାକୁ ମୋର ଠେଲି ଦେଉଛି । ମୋ ଝିଅକୁ କ'ଣ ବର ମିଳନ୍ତା ନାଇଁ ?

ନଖି ବୋଉ ଛିଣ୍ଡା କୋତରା କାନିରୁ ଫାଳେ ମୁହଁରେ ଦେଇ ସୁଁ ସୁଁ ହେଲା ।

ମଧୁଆ ଭଣ୍ଡାରୀ ନଖି ବୋଉର ମନ କଥା ବୁଝିଲା ପରା । ସେ ଟିକେ ଦବିଯାଇ କହିଲା-ତୋ ଝିଅ ସେଠି ରାଜରାଣୀ ହେବଲୋ ରାଜରାଣୀ । ନେ ନେ ଏ ଗହଣା ଏତକ ଆଉ ଏ ଶାଢୀ ଖଣ୍ଡକ ନେ । ନଖିକୁ ବେଶ ଭୂଷା କରି ପଠେଇଦବୁ । ତା ଶାଶୁଘର ଲୋକେ ପଠେଇଛନ୍ତି । ଏତେ ବଡ଼ ଘରର ବୋହୂ ହବ ସିଏ । ଏମିତି ହୀନିମାନ ହେଇ ଶାଶୁଘର ଗଲେ ତା ମାନ ସମ୍ମାନ ରହିବଟି ?

ଗୋଟିଏ ପୁରୁଣା ରୁମାଲରେ ବନ୍ଧା ହୋଇଥିବା ଗହଣାତକ ମଧୁଆ ଭଣ୍ଡାରୀ ନଖି ବୋଉ ଆଗରେ ମେଲାଇ ଧରିଲା । ଆଁ, ଏ ସବୁ ନଖିପାଇଁ ।

ଝଲସି ଉଠିଲା ନଖି ବୋଉର ଆଖି । ଏତେ ଗୁଡ଼ାଏ ସୁନା ଗହଣା ସେ କେବେ ଏତେ ପାଖରୁ ଦେଖି ନଥିଲା । ସିଏ ବାହାହୋଇ ଆସିଲା ବେଳକୁ ତା କାନରୁ ନିମ କାଠି କଢା ହୋଇ ନଥିଲା । ତା ଜେଜୀ ମାଆର ଗୋଟିଏ ରୂପା ସୁଉକୀମାଳ ତା ବେକରେ ଲମ୍ବେଇ ଦେଇଥିଲା ତା ମାଆ । ପାଦ ପାଇଁ ହଳେ ପାଉଁଜି ଆଉ ଚାରି ଚାରି ପଟ ରୂପା ଚୁଡ଼ି ତା ବାପା ଆଣିଥିଲା କଲିକତାରୁ । ବାସ୍ । ଏଇଯା ଥିଲା ତାର ଗହଣା । ସୁନା ଗହଣା କେବେ ଛୁଇଁ ନଥିଲା ସିଏ ।

ନଖି ଶାଶୁଘରୁ ଆସିଥିବା ସୁନା ଗହଣା ନଖିକୁ ଭାରି ମାନିବ । କହନ୍ତି ପରା ! ଗୋରୀକୁ ଶାଢୀ ସୁନ୍ଦର । କାଳିକୁ ସୁନା ସୁନ୍ଦର ।

ସତକୁ ସତ ନଖିର ଭାଗ୍ୟ ଭାରିଟାଣ । ତା ପରି ପର ଘରେ ଅଇଁଠା ବାସନ ମାଜି ସେ ଜୀବନ ବଞ୍ଚିବନି ।

ନିଜ ହାତରେ ଗହଣାତକ ସିଏ ପିନ୍ଧେଇ ଦେଲା ନଖିକୁ । ଲକ୍ଷ୍ମୀ ଠାକୁରାଣୀ ଭଳି ଝଟକି ଉଠିଲା ସିଏ । ଘଣ୍ଟାଏ କାଳ ନଖିର ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଅନେଇ ରହିଲା ନଖି ବୋଉ । ତା ବୁକୁ ପୂରିଗଲା । ମନେ ମନେ କହିଲା, ମାଆ ଡାଆଣୀ । ମାଆ ଦୃଷ୍ଟିଠୁଁ ଦୃଷ୍ଟି ନାହିଁ । ନଣ୍ଡାଏ ଛୋପ ପକେଇଦେଲା ତା ଉପରେ । କବାଟ କୋଣରେ ଡେରା ହୋଇଥିବା ଖଣ୍ଡିଆ ଝାଡୁରୁ ଖଣ୍ଡେ ଟାଣି ଆଣି ଝିଅର ଖୋସାରେ ଖୋସିଦେଲା । ଝିଅଟା ମୋର ଗାଡ଼ି ଘୋଡ଼ାରେ ଯିବ, କାହାର କେତେ ପ୍ରକାର ଦୃଷ୍ଟି ।

ନଖିର ଗହଣା ସବୁକୁ ଲୋଭିଲା ଦୃଷ୍ଟିରେ ଦେଖୁ ଦେଖୁ ସାନଝିଅ ମଖି ପାଟି କରି ଉଠିଲା-ଅପାର କାନ ଫୁଲ ଭଳି ମୋ ସାଙ୍ଗ କୁନି ବି ହଳେ କିଣିଛି ଲୋ ବୋଉ ! ବାବୁଲା ଦୋକାନରୁ । ତିରିଶ ଟଙ୍କା ନେଲା ।

ନଖି ବୋଉ ଚମକି ପଡ଼ିଲା ପରି ହେଇ କହିଲା-ଚୁପ୍ ଟୋକୀ ! ଯାହା ପାଟିକୁ ଆସୁଛି କହିଦେଉଛି, ଇୟେ କ'ଣ ପିତଳ ହେଇଛି କିଲୋ ! ତିରିଶ ଟଙ୍କାରେ ତତେ

କିଏ ଦେଇଦେବ ? ତା ଶାଶୁଘର ଲୋକ ପରା ପଠେଇଛନ୍ତି । ବହୁତ ବଡ଼ ଲୋକ ସେମାନେ । ସେମାନେ କ'ଣ ପିତ୍ତଳ ଗହଣା ପିନ୍ଧନ୍ତି ? ଇୟେ ସବୁ ଖାଣ୍ଟି ସୁନାର ଗହଣା ।

ମଖି ଶଙ୍କିଯାଇ କହିଲା-ହଁ ଲୋ ବୋଉ ତୁ ତ ଜମା ବିଶ୍ୱାସ କରିବୁନି ।

ନଖିବୋଉର ବିଶ୍ୱାସର ବାଲି ବନ୍ଧ ଉପରେ ସତେ ଅବା ଉତ୍ତାଳ ଢେଉଟାଏ କଚାଡ଼ି ହୋଇପଡ଼ିଲା । ତଥାପି ସିଏ ମୁହଁଟାଣ କରି କହିଲା, ଆଜିକାଲି ଭଳିକି ଭଳି ଗିଲ୍‌ଟି ଗହଣା ବଜାରରେ ମିଳୁଛି । ତୋ ଅପା ପରି ସମସ୍ତଙ୍କ କପାଳରେ ସୁନା ଗହଣା ଜୁଟେନି । ସେଇ ଗହଣା ପିନ୍ଧି ସେମାନେ ମନର ଓରମାନ ମେଣ୍ଟାଇଥାନ୍ତି ।

ତୁହାଇ ତୁହାଇ ମନେ ପଡ଼ିଲା ତଳସାହି ଶୋବଳ କଥା । ସେଦିନ ସେ ଚୁନପତର ଟିକେ ହାତରେ ଦଲୁ ଦଲୁ କହିଥିଲା-ଆଲୋ ଝିଅଟାକୁ ଏତେ ଦୂରରେ ଦେଉଛୁ ଯେ ନା ବର ଦେଖିଲୁ ନା ଘର ଦେଖିଲୁ !

କଥାରେ ପରା ଅଛି ଲୋ ! ଘର ଦେଖି, ବର ଦେଖି, କାନ୍ଥ ଖୋଳି କୁଜ ଦେଖି । ସେ ଝାନ୍‌ସୀ ଫାନ୍‌ସୀ ଆଡ଼େ ଝିଅ ଗଲେ ଆଉ କୁଆଡ଼େ ଫେରୁନାହାନ୍ତି ଲୋ ! ଗୁକୁଣା ରଥ ଅଣଲେଉଟା । ମଲେ କି ହଜିଲେ ପତ୍ତା ମିଳୁନାହିଁ । ଶଙ୍କରା ସୋଇଁ ଝିଅ ବିଜୁଳି ବାହାହୋଇ କେତେ ବରଷ ହେଲାଣି ? ତାର କ'ଣ କିଛି ଖୋଜ ଖବର ଅଛି ? ତୁଛାଟାକୁ ଯାହା ଶଙ୍କରା ଫୁଟାଣି ମାରୁଛି ନା ଝିଅ ବଡ଼ ଘର ବୋହୂ ବୋଲି ।

ଶୋବଳ ଆଉ ଟିକେ ନଖିଆ ବୋଉ ଆଡ଼କୁ ଢଳି ପଡ଼ି କହିଲା-ଆଲୋ ! ନଖି ଶାଶୁଘର କୁଆଡ଼େ କିଛି ଖରଚବାରଚ ଦେଇଛନ୍ତି ! କେତେ ? ଦଶ କୋଡ଼ିଏ ହଜାର ? ତିରିଶ ହଜାର ?

ଚିହିଁକି ଉଠିଲା ନଖିବୋଉ । ତମ ପାଟିରେ ପୋକ ପଡୁରେ ଅଳପେଇଷା । ମୋ ଝିଅକୁ ମୁଁ ନଈକୁ ଠେଲିଦେଲି ତମମାନଙ୍କର କ'ଣ ଯାଉଛି ରେ ! ନଖି ମୋ ଝିଅ । ମୁଁ ତାକୁ ଅନ୍ତଫାଡ଼ି ଜନମ ଦେଇଛି । ସାବତ ସନିପାତ ନୁହେଁ, ମୁଁ ତାକୁ ବିକି ଖାଇବି, ତମମାନଙ୍କର କାହିଁକି ଦେହରେ ଯାଉନି ? ଦୁମ୍ ଦୁମ୍ ହୋଇ ଘର ଭିତରକୁ ପଶିଯାଇଥିଲା ନଖି ବୋଉ ।

ସେଦିନ ଡେରି ରାତିରେ ଘରକୁ ଫେରିଥିଲା ନଖି ବାପା ରଘୁଆ । ସୁଁ ସୁଁ ହୋଇ ନଖିବୋଉ ସବୁ କଥା କହିଥିଲା ନଖିବାପାକୁ । ଝିଅଟାକୁ ଏତେ ଦୂରରେ ନଦେବା ପାଇଁ ନେହୁରା ନିଉଛାଳି ବି ହୋଇଥିଲା ।

ରଘୁଆ ନଖିବୋଉକୁ ନାଲି ଆଖି ଦେଖେଇ କହିଲା ତିନିତିନିଟା ଝିଅ ତ ଜନମ କରିଛୁ, ଘରେ ବାନ୍ଧି ରଖି ସେମାନଙ୍କୁ କ'ଣ କାଞ୍ଜି କରିବୁ ? ତା ମୁଣ୍ଡକୁ ପିତ୍ତ ଚଢ଼ି ଉଠୁଥିଲା, ନିଜକୁ ସମ୍ଭାଳି ନେଇ ନରମ ସ୍ୱରରେ କହିଲା-ତୁ କାହିଁକି ସେମାନଙ୍କ କଥା ଶୁଣୁଛୁ ଯେ ? ଶାଗଖିଆକୁ ପେଜ ଖିଆ ସହେନା । ଇୟେ ପରା ଦୁନିଆର ଦସ୍ତୁର ।

ସେମିତି କାନ୍ଦିଲା ସ୍ୱରରେ କହିଲା-ମଖି ହୋଇଥିଲେ ମୋର ଚିନ୍ତା ନଥାନ୍ତା। ଥଣ୍ଡା ମିଞ୍ଜାସର ଝିଅଟା। କାନ କାଟିଲେ ବଚନ ବାହାରିବନି। ଏତେ ଦୂରରେ ଦେବା। ତାର ଭଲ ମନ୍ଦ ବୁଝିବା ପାଇଁ ଆମେ ନଥିବା। ରଘୁଆ ତାଗିଦ୍ କଲାପରି କହିଲା ଆଲୋ! ଦେଲା ନାରୀ ହେଲା ପାରି। ଝିଅଟାକୁ ଭଲ ଘର ଭଲ ବରରେ ଦେଇ ଦେଲେ ଆମ ବୋଝ ଉତୁରିଗଲା ବୋଲି ଜାଣ। ତେଣିକି ତା କପାଳ! ଆମେ କେତେ ଦିନ ବଞ୍ଚିବା। ତୁ ସେଇ କଥାକୁ ମାଜି ମାଜି କାହିଁକି ମୋ ମୁଣ୍ଡ ଖରାପ କରୁଛୁ କହିଲୁ?

ନଖି ବୋଉ ଆଖିକୁ ନିଦ ଆସୁ ନଥିଲା। ସେ ଘରୁ ଝିଅ ଦୁଇଟା ଭୁଟୁରୁ ଭୁଟୁରୁ ହେଉଥିଲେ। ସେମାନେ ବି ଶୋଇ ପଡ଼ିଲେଣି। ରଘୁଆ ତ ପେଟେ ପିଇକି ଆସିଛି। ତାର ଶୋଇବା ନ ଶୋଇବା ଏକା କଥା। ସେଇ ଅନ୍ଧାର ଭିତରେ ନଖି ବୋଉ ଦେଖିଲା- ଚାରିଆଡ଼େ କିଟି କିଟି ଅନ୍ଧାରର ରାଜୁତି। ଝଡ଼ି ବରଷା ଅଣଚାଷ ହୋଇ ବହୁଛି। ମୁହଁକୁ ମୁହଁ ଦିଶୁନି। ଶୁଭୁଛି ସାହି ପଡ଼ିଶାଙ୍କର ଟାହୁଲି ଟାପରା। ତୀର ଭଳି ଭେଦିଯାଉଛି ନଖି ବୋଉର ଛାତିରେ। ସେ ଯନ୍ତ୍ରଣାରେ କ୍ଷତ ବିକ୍ଷତ ହୋଇ ଆର୍ତ୍ତ ଚିତ୍କାର କରୁଛି। ପୁଣି ଆକାଶଟା ଶରତ ଆକାଶ ପରି ସଫା ହୋଇଯାଉଛି। ହସନ୍ତ ଜହ୍ନ ଚାଙ୍ଗୁଡ଼ା ଚାଙ୍ଗୁଡ଼ା ରୁପେଲି କିରଣ ଅଜାଡ଼ି ଦେଉଛି ନଖି ଉପରେ। ବାଡୁଅ ପାଣିରେ ଗାଧୋଇଲା ପରି ନଖି ହଜିଯାଇଛି ସେଇ ରୂପାରଙ୍ଗର ଜୋଛନାରେ। ଲାଜରେ ଝାଉଁଳି ପଡ଼ିଛି ତା ଦେହ। ସୁନା ରୂପା ଆଦି ଅଳଙ୍କାରରେ ପୋତି ହୋଇପଡ଼ିଛି ନଖି। ସିଏ ଆଉ ନିରିମାଖି ନଖି ହୋଇ ନାହିଁ, ସାକ୍ଷାତ ନଖମୀ ଠାକୁରାଣୀ ପରି ଦିଶୁଛି। ଦୁଇ ବେଳା ଦୁଇ ମୁଠା ଖାଇବାକୁ ପାଉ ନଥିବା ନଖି ନିଜ ହାତରେ ଦାନ ଧ୍ୟାନ କରୁଛି, ଭୋକୀ ରଙ୍କୀଙ୍କ ପେଟ କଥା ବୁଝୁଛି। ରାଜରାଣୀ ପାଲଟି ଯାଇଛି। ନିଦ ପଛେ ପଛେ ଆସେ ସ୍ୱପ୍ନ। କିନ୍ତୁ ଏମିତି ଅଜସ୍ର ସ୍ୱପ୍ନରେ ନିଜକୁ ହଜେଇ ଦେଉ ଦେଉ କେତେବେଳେ ନିଦ୍ରାଦେବୀ ଆସି ତାକୁ କୋଳେଇ ନେଇଛନ୍ତି ସେ ଜାଣିପାରିନାହିଁ।

ତା ନାକର ବାସନା ବାରି ରଘୁଆ ପାଦ ଚିପିଚିପି ଉଠିଲା। ମଧୁଆ ପାଖରୁ ଆଣିଥିବା ଆଗୁଆ ପାଞ୍ଚହଜାର ଟଙ୍କା ପଲିଥିନ୍ କାଗଜରେ ଗୁଡ଼େଇ ସିଏ ଖୋସିଦେଲା ଚାଳରେ। ଶଳା ମାଇକିନିଆର ଆଖିରେ ପଡ଼ିଲେ ଦୁନିଆ ପ୍ରଶ୍ନ ପଚାରିବ। ଯୋଉ ଦିନ ନଖି ଶାଶୁଘର ଯିବ ସେଦିନ ବଳକା ୧୫ ହଜାର ଟଙ୍କା ସେ ଦେବ। ରଘୁଆ ଆଖିରେ ବି ମେଞ୍ଚାଏ ସ୍ୱପ୍ନ। ଟଙ୍କା ପନ୍ଦର ହଜାରେ ପାଇଲେ ସେ ତା ନିଜର ଗୋଟାଏ ରିକ୍ସା କରିବ। ସାରା ଦିନଟାର ରୋଜଗାର ସେ ଯେମିତି ମାଲିକକୁ ଦେଇ ଆସୁଛି ସେମିତି କରିବନି। ଆଉ ଗୋଟାଏ ରିକ୍ସା ଭଡ଼ାରେ ଦେବ। ସେଥିରୁ ଦୁଇ ପଇସା ଆସିଲେ ତାକୁ ସଞ୍ଚି ମଖି ପାଇଁ ଭଲ ପାତ୍ରଟିଏ ଯୋଗାଡ଼ କରି ବାହା ଦେଇଦେବ। ସାନଟାକୁ ପଛେ ଘରେ ଘର ଜୋଇଁ ରଖିବ। ପଡ଼ନ୍ତ ବେଳକୁ ବୁଢାବୁଢୀ ଦୁଇଟାଙ୍କ ପାଇଁ ସେ ସାହାରା ହେବ।

ନଷ୍ଟି ବୋଉ ଓ ରଘୁଆ ଦୁହେଁ ଦୁହିଁଙ୍କ ସ୍ୱପ୍ନରେ ମସ୍‌ଗୁଲ ଥିବାବେଳେ ରାତିଟା କେତେବେଳେ ପାହିଗଲା କେହି ଜାଣିପାରିଲେ ନାହିଁ ।

ନଷ୍ଟି ବାହାଘର ମନ୍ଦିରରେ ହେଲା । ନଷ୍ଟିର ବର ସାଙ୍ଗରେ ଆଉ ଦୁଇଜଣ ଲୋକ ଆସିଥିଲେ । ସେମାନେ କଥା ହେଉଥିଲେ ହିନ୍ଦୀରେ । ମଧୁଆ ସବୁ ଦାୟିତ୍ୱ ତୁଲାଉଥିଲା । ନଷ୍ଟି ବୋଉ ମନକୁ ଖୁବ୍ ପାଇଥିଲେ ସେମାନେ । ବରଟାର ଟିକେ ବୟସ ହୋଇଯାଇଥିଲେ ବି ଅସୁନ୍ଦର ନଥିଲା । ନଷ୍ଟିକୁ ଛାଡ଼ିବା ପାଇଁ ରଘୁଆ ବାହାରୁଥିଲା ସେମାନଙ୍କ ସାଙ୍ଗରେ । ମଧୁଆ ଭଣ୍ଡାରୀ ବାରଣ କରି କହିଲା-ତୁ ଆଉ କାହିଁକି ଏତେଗୁଡ଼ାଏ ପଇସା ଖର୍ଚ୍ଚ କରିଯିବୁ ରଘୁଆ ଭାଇ ! ସେମାନେ ଝିଅକୁ ନେଇଯା'ନ୍ତୁ । ବରଂ ଆଉ ମାସେ ଦୁଇ ମାସ ପରେ ନଷ୍ଟି ବୋଉ, ତୁ ଆଉ ମୁଁ ମିଶିଯିବା, ଝିଅକୁ, ତା ଘରଦ୍ୱାରକୁ ଦେଖି ଆସିବା । ରଘୁଆ ମନକୁ କଥାଟା ପାଇଲା । ନଷ୍ଟି ବୋଉ ନଷ୍ଟିର ଶ୍ୱଶୁର ବୋଲି ପରିଚୟ ଦେଉଥିବା ଲୋକଟାର ହାତ ଧରି ଢେର ବେଳଯାଏ ବାହୁନି ହେଲା । ନଷ୍ଟିଟା ହୁଣ୍ଡୀ, ସରଳ ନିରୀହ, ଓଲମୀଟା ଗେଲ ବସରରେ ବଢିଥିଲା । କାମଦାମ କିଛି ଜାଣିନି । ତାକୁ ବର୍ଷେ ଛମାସ ଚଳେଇ ନେବ । ତାର ଦୋଷାଦୋଷ ଧରିବନି । ଏମିତି ଅନେକ କଥା । ଲୋକଟା କିଛି ବୁଝୁଥିଲା କି ନାଇଁ କେଜାଣି । କେବଳ ମୁଣ୍ଡ ଟୁଙ୍ଗାରୁଥିଲା । ମୁଣ୍ଡରେ ହାତଦେଇ ଗୁମ୍ ମାରି ବସିଥିଲା ରଘୁଆ । ଆଜି ନିଶାର ମାତ୍ରାଟା ଟିକେ ଅଧିକ ହୋଇଯାଇଥିଲା ପରା, ସେଇଟା ସୁଖର ନିଶା କି ଦୁଃଖର ନିଶା ଜାଣି ହେଉନଥିଲା ଜମା ।

ବାପା ମାଆ ସାହି ପଡ଼ିଶା ବନ୍ଧୁବାନ୍ଧବ ସମସ୍ତଙ୍କ ହୃଦୟରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିଥିବା ହୁଣ୍ଡୀ ନିରୀହ ଓଲମୀ ନଷ୍ଟି ଯେମିତି ଲାଗୁଥିଲା ଖଣ୍ଡେ ଥାଲ୍‌କୁଡ଼ୀ ପଥର । ତା ଆଖିରେ ଲୁହ ନଥିଲା କି ଓଠରେ ହସ ନଥିଲା । ବିବାହର ରଙ୍ଗୀନ ସ୍ୱପ୍ନ ତାକୁ ବିଭୋର କିମ୍ବା ପରିବାରରେ ବିଚ୍ଛେଦ ଜନିତ ଦୁଃଖ ତାକୁ ଅଧୀର କରୁଥିଲା କି ନାହିଁ କେଜାଣି ସିଏ କିନ୍ତୁ ସଂପୂର୍ଣ୍ଣ ଉଦାସ ଥିଲା । ରୋବର୍ଟ କଣେଇ ଭଳି ସିଏ କେବଳ କୁଲୁକୁଲୁ ଚାହୁଁଥିଲା ଆଉ ଯିଏ ଯାହା କହୁଥିଲା ନିର୍ବିକାର ଭାବରେ କରିଯାଉଥିଲା । ଶାଶୁଘରୁ ଆସିଥିବା ଗହଣା ପିନ୍ଧାଠାରୁ ଆରମ୍ଭ କରି ହଳଦୀ କୁଙ୍କୁମ ସିନ୍ଦୂର ଅଳତା ଚୁଡ଼ି ଆଉ ନୂଆ ଶାଢୀ ପିନ୍ଧିବା ପର୍ଯ୍ୟନ୍ତ । ମନ୍ଦିର ପରିସରରେ ବର ବେକରେ ବରଣମାଳା ଦେଲାବେଳେ ବି ସେ ଏତେ ଟିକେ ମାଦକତା ଅନୁଭବ କଲାପରି ଲାଗୁ ନଥିଲା ।

କନକ ଆଞ୍ଜୁଳି ମୁଠାକ ମାଆ କାନିକୁ ଓଜାଡ଼ି ଦେଲାବେଳକୁ ମୁଗୁନି ପଥର ପାଲଟି ଯାଇଥିବା ନଷ୍ଟିକୁ ଦୁଇଥାଙ୍କ ଦେଇ ସେ କହିଲା, ତୁ ଶାଶୁଘର ଯାଉଛୁଲୋ ହୁଣ୍ଡୀ, ସତସତିକା ନହେଲେ ବି ମିଛମିଛିକା ଲୁହ ଦିଟୋପା ନିଗାଡ଼ିପକା । ତୋ ବାପଘର

ଖେଳ ସରିଯାଉଛି ଲୋ । ଶାଶୁ ଘରେ ବୋହୂପଣ କରିବୁ । ଦାୟିତ୍ୱ ମୁଣ୍ଡେଇ ସଂସାର କରିବୁ, କେତେ ଅଦଉତି ସହିବୁ ।

ନଖି କ'ଣ ବୁଝିଲା କେଜାଣି । ବରଫ ଖଣ୍ଡେ ଭଳି ବିଗଳିତ ହେବା ପାଇଁ ତାକୁ ମୁହୂର୍ତ୍ତଟାଏ ବି ଲାଗିଲା ନାହିଁ । ମଲା ମାଛର ଆଖି ଭଳି ନିଶ୍ଚଳ ଓ ନିଷ୍ପ୍ରାଣ ଲାଗୁଥିବା ତା ଦୁଇ ଆଖିରେ କୋଉଠି ଥିଲା ଏତେ ପାଣି, ଗଙ୍ଗା ଯମୁନା ପରି ସିଏ ବହି ଚାଲିଲା ଯେ ଚାଲିଲା । ପଥର ମୂର୍ତ୍ତିର ଓଠ ପରି ଲାଗୁଥିବା ତାର ଦୁଇ ଓଠ ବରଡ଼ା ପତ୍ର ପରି ଥରିଉଠିଲା । ସେ ଚିତ୍କାର କଲାପରି ମାଆକୁ କୁଣ୍ଢେଇ ଧରି କହିଲା- ବୋଉ ଲୋ ! ମୁଁ କୋଉଠିକୁ ଯିବିନି ତତେ ଛାଡ଼ି । ମତେ ଏଇଠି ତୋରି ଛାତି ତଳେ ଟିକିଏ ଜାଗା ଦେ ଲୋ । ମୁଁ ନେହୁରା ହଉଛି ତତେ । ତାପରେ ଗଳା ଫଟାଇ ଏତେ ଜୋର୍‌ରେ ରଡ଼ି କରି କାନ୍ଦିଲା ଯେ ଦେଖଣାହାରୀ ସ୍ତବ୍ଧ ହୋଇଗଲେ । ଏ କାନ୍ଦଣାରେ ଝିଅଟିଏ ଶାଶୁ ଘରକୁ ଯିବାବେଳର ହୃଦୟ ବିଦାରକ ମଧୁର ଯନ୍ତଣା ନଥିଲା । ମନେ ହେଉଥିଲା ସତେ ଅବା ମନ୍ଦାର ମାଳା ବେକରେ ପକାଇ ଯୂପକାଠ ଆଡ଼କୁ ଟାଣି ଟାଣି ନେଉଥିବା ଛେଳିଟିର ମର୍ମନ୍ତୁଦ ଚିତ୍କାର ।

ଆଗକୁ ପାଦ ବଢେଇବା ପରିବର୍ତ୍ତେ ଧୂଳି ଧୂସରିତ ଅଗଣାରେ ଲଥ୍ କରି ବସିପଡ଼ିଲା ନଖି । ତା ଅନ୍ତନାଡ଼ୀ ଦୁହିଁ ବାହାରି ଆସୁଥିବା ଆର୍ତ୍ତବିଳାପ ଉପସ୍ଥିତ ଦେଖଣାହାରୀଙ୍କ ହୃଦୟକୁ ବିଦୀର୍ଣ୍ଣ କରି ଦେଉଥିଲା । ନଖିକୁ ତଳୁ ଉଠେଇ ରିକ୍ସା ପର୍ଯ୍ୟନ୍ତ ନେବାର ସାମର୍ଥ୍ୟ ମାଆ ମାଉସୀ ପିଉସୀ ଅବା ଖୁଡ଼େଇ ବଡ଼ମା ମାନଙ୍କର ନଥିଲା । ଶେଷକୁ କେତେଜଣ ପୁରୁଷ ବୋଝ ଉଠେଇଲା ଭଳି ନଖିକୁ ଉଠେଇ ରିକ୍ସା ଭିତରେ ବସେଇ ଦେଇଥିଲେ । ରିକ୍ସାବାଲାକୁ ନିର୍ଦ୍ଦେଶ ଦିଆଯାଇଥିଲା, ଯେତେ ଶୀଘ୍ର ପାରୁ ନଖିକୁ ଷ୍ଟେସନ ନେଇଯିବ ।

ନଖି ଚାଲିଗଲା ଶାଶୁଘର । ନଖି ବୋଉ ଓ ରଘୁଆ ଝିଅ ବୋଝରୁ ମୁକ୍ତ ହେଲେ । ନିରୀହା ନିରିମାଖି ନଖି ପାଇଁ ଆକାଶ ଲୁହ ଝରେଇଲା, ଗଛ ପତ୍ର ବାହୁନି ହେଲେ, ପବନ ବାହୁନି ହେଲା, ସେ ସବୁ କ୍ଷଣିକ ପାଇଁ । ପୁଣି ରାତି ପାହିଲା । ସିନ୍ଦୂରା ଫାଟିଲା । ସୁରୁଜ ଦେବତା ଉଇଁଲେ । ଯିଏ ଯାହାର ଧନ୍ଦାରେ ମନ ଦେଲେ । ଗାଁର ସବୁ ଝିଅ ଶାଶୁଘର ଗଲାପରି ନଖି ବି ତା ଶାଶୁଘର ଚାଲିଗଲା । ତା ସ୍ମୃତିରେ ବାଲି ଚରି ଆସିଲା ।

ପୁଣି ଦିନେ ଏଇ ବାଲିଚର ଭିତରୁ ମୁଣ୍ଡ ଟେକି ନଖି ପ୍ରସଙ୍ଗ ଗାଁର ମଞ୍ଚ ଥରେଇଦେଲା । କେହି ଜଣେ ଆସି ଗାଁରେ ଖବର ଦେଲା ନଈବାଲିରେ ନଖି ବସିଛି । ପଚାରିଲେ କିଛି କହୁନି । ଖାଲି ବକ ବକ କରି ଚାହୁଁଛି । ଘରକୁ ଡାକିଲେ ଆସୁନି ।

ନଖି ବୋଉ କାନରେ ପଡ଼ିଲା କଥା । ସିଏ ବାଇଆଣୀ ପରିକା ହୋଇ ଧାଇଁଲା ନଈପଠାକୁ । ନଖି ଗୋଡ଼ ହାତ ଲମ୍ବେଇ ସାତ ବରଷର କିଶୋରୀଟିଏ ଭଳି ବସିଥିଲା ବାଲିରେ । ସେ ବିଦା ହେଲା ଦିନ ତା ମୁଣ୍ଡରେ ଯାହା ତେଲ ଗିନାଏ ସେ ମାଖି ଦେଇଥିଲା

ସେଇ ସେତକ । ଆଉ ତେଲ ହାତଟିକେ ବାଜିନି, ପିନ୍ଧିଥିଲା ଛିଣ୍ଡା କୋତରା ଶାଢୀ ଖଣ୍ଡେ । କେତେ ଦିନ ହେଲା ଦାନା ଗଣ୍ଡେ, ତା ପେଟରେ ପଡ଼ି ନଥିଲା କେଜାଣି । ପେଟ ଯାଇ ପିଠିରେ ଲାଗିଥିଲା । ଗାଲ ପଶିଯାଇଥିଲା, ଦୁଇ ଆଖିରେ ଦୁଇ ପୋଷ ଚାଉଳ ଧରିବା ପରି ଲାଗୁଥିଲା । ଇଏ ନଖି ନା ତାର ପ୍ରେତ । ଗର୍ଭଧାରିଣୀର ବୁକୁ ବିଦୀର୍ଣ୍ଣ ହୋଇପଡ଼ିଲା । ସେ ନଥ୍ କରି ବସିପଡ଼ିଲା ଓ ନଖିକୁ କୁଣ୍ଢେଇ ଧରି ବାହୁନି ଉଠିଲା-

"ଆଲୋ ମୋ ନଖମୀ ଠାକୁରାଣୀ ଲୋ ! ତତେ କିଏ ଏତେ ସରି କଲାଲୋ । ମୋ ସୁନା ଖଡ଼ିକା ଲୋ ! ତୁ କେମିତି ଏତେ ଦୂର ଆଇଲୁ ଲୋ । ମୋ ଧନ ଲୋ ! ମୋ ସୁନା ଲୋ !

ନଖି ହଠାତ୍ କିଛି ବୁଝିପାରିଲାନି । ଏ ସ୍ତ୍ରୀ ଲୋକଟା କାହିଁକି ତାକୁ ଏମିତି ଜାବୁଡ଼ି ଧରି ବାହୁନି ହେଉଛି ? ସେ ଦେହ ଉପରୁ ଅଳିଆ ଆବର୍ଜନା ଝାଡ଼ିଲା ପରି ଦୁଇ ହାତରେ କ୍ରନ୍ଦନରତା ମାଆକୁ ଆଡ଼େଇଦେଲା ଓ ତା ମୁହଁକୁ କିଛି ସମୟ ଚାହିଁ ରହିଲା କୌଣସି ବିସ୍ମୟଜନକ ଦୃଶ୍ୟ ଦେଖିଲା ପରି ।

ନଖି ବୋଉ ତଥାପି ସେମିତି ବାହୁନି ହେଉଥାଏ-

ବାଡ଼ିପଶା ମଧୁଆ ତୋ କୁଳ ବୁଡ଼ିବରେ । ତୋରି ବୁଦ୍ଧିରେ ମୋ ନଖିମୀ ଠାକୁରାଣୀକୁ କାଙ୍ଗାଳୁଣୀ କରିଦେଲିରେ ! ହେ ଚନ୍ଦ୍ର ସୂର୍ଯ୍ୟ, ହେ ଧର୍ମଦେବତା, ତୁ ବୁଝିବୁ । ମୋ ଝିଅର ଯିଏ ଏତେ ଅବସ୍ଥା କରିଛି, ତୁ ସେମାନଙ୍କୁ ସାତ ଅବସ୍ଥା କରିବୁ । ନଖି ବୋଉର ଅଭିସମ୍ପାତ ସେମିତି ଖେଳି ବୁଲୁଥିଲା ନଈପଠାରେ ।

ଖିଲି ଖିଲି ହୋଇ ହସିଉଠିଲା ନଖି । କଅଁଳା ବାଛୁରୀପରି ନଈବାଲିରେ ଖଣ୍ଡେ ଦୂର ଦଉଡ଼ି ଯାଇ ପୁଣି ବସିପଡ଼ିଲା ଗୋଡ଼ ହାତ ଲମ୍ବେଇ । ମୁଠା ମୁଠା ବାଲି ଧରି ଆକାଶକୁ ଫିଙ୍ଗିଲା ତ ପୁଣି ମୁଠା ମୁଠା ବାଲି ନଦୀ ଆଡ଼କୁ । ପୁଣି କେତେବେଳେ ଦୁଇ ମୁଠା ବାଲି ରାମ୍ପୁଡ଼ି ଦୁଇ ଗାଲରେ ହଳଦୀ ମାଖିଲା ପରି ମାଖି ହେଉଥିଲା, ଝୁରୁ ଝୁରୁ କରି ତା ନୁଖୁରା ମୁଣ୍ଡରେ ବର୍ଷି ଦେଇ ଯାଉଥିଲା ।

ମଡ଼ା କାନ୍ଦଣା ପରି ନଖି ବୋଉର କାନ୍ଦଣା ତଥାପି ନଈପଠାରେ ଲହରେଇ ଲହରେଇ ଶୁଭୁଥିଲା-

ମୋ ଗଳାମାଳି ଲୋ ! ମୋ ଧନମଣି ଲୋ !
ମୋ ସୁନା ଖଡ଼ିକା ଲୋ ! ମୁଁ କ'ଣ କରିବି ଲୋ !
ମୋ ସଂସାର ଉଜାଡ଼ି ଦେଲା ଲୋ ଏ ରକତ ଖିଆ ମଧୁଆ ।
ତୋ କୁଳ ବୁଡ଼ିବରେ ମଧୁଆ
ତୋ ମୂଳ ଛିଣ୍ଡିବ ।



# ପ୍ରାୟଶ୍ଚିତ

ଜନ୍ମକାଳରୁ ମାଆକୁ ଖାଇଥିଲା । ବଡ଼ବଡ଼ୁଆ କହି ଯାଇଛନ୍ତି ମାଆ ଛେଉଣ୍ଡ ଛୁଆ ବଡ଼ହେଲେ ଭାରି ସୁଖ କରନ୍ତି । ସବୁ ବିଧିବିଧାନ ଓଲଟା ଫଳୁଛି ହତଭାଗିନୀଟା ପାଇଁ । ହୃଷିକେଶ ବାବୁଙ୍କ ହାତକୁ ଚା' କପ୍‌ଟା ବଢେଇ ଦେଉଦେଉ ଦରଦଭରା କଣ୍ଠରେ ବୋଉ କହିଲା ।

ପ୍ରଶ୍ନିଳ ଦୃଷ୍ଟିରେ ବୋଉର କରୁଣ ମୁହଁଆଡ଼େ ଚାହିଁ ହୃଷିକେଶ କହିଲେ "କାହାକୁ ହତଭାଗିନୀ କହୁଛୁ କି ଲୋ ବୋଉ ?

ସେଇ ବିନି ମ ! ସୁକୁମାରୀର ଝିଅ । କାଲି ତତେ ଜୁହାର ହେବାପାଇଁ ଆସିଥିଲା । ବୋଉ ହତାଶ ସ୍ୱରରେ କହିଲା ।

ହଁ ତ ! ତା'ର ପରା ଆଜି ବାହାଘର । ତାକୁ ହତଭାଗିନୀ କହୁଛୁ କାହିଁକି ? ହୃଷିକେଶବାବୁ ଚା' କପ୍‌ଟା ମୁହଁକୁ ନେଉନେଉ କହିଲେ ।

ହେଲା ଆଉ କୋଉଠି ? ବରଧରା ଫେରିଆସିଲା । ତା' ବରଟା କୁଆଡ଼େ ଗୋଟାଏ ମର୍ଡ଼ର କେଶ୍‌ରେ ଥିଲା ଯେ ପୋଲିସ୍ ତାକୁ ଆରେଷ୍ଟ କରି ନେଇଗଲା । ବର ହୋଇ ପାଲିଙ୍କିରେ ବସିବା ବେଳର ଘଟଣା ଇଯେ । ଜାଣୁଜାଣୁ କ'ଣ ତା ମାମୁଁମାନେ ମର୍ଡ଼ର ଆସାମୀ ସାଙ୍ଗରେ, ଝିଅଟାକୁ ବାହାଦେବେ ? ମଂଗୁଳା କନ୍ୟା । ତାକୁ ଆଉ କିଏ ବାହାହେବ ? ତା' କପାଳ ଫାଟିଲା ଜାଣ ।

ଆକାଶରୁ ଖସିପଡ଼ିଲା ଭଳି ଅନୁଭବ କଲେ ହୃଷିକେଶ । କାଲି ମୁହଁ ସଂଜବେଳେ ଚଉରାମୂଳେ ସଂଜବତୀ ଥୋଇଦେଇ ମୁଣ୍ଡିଆ ମାରୁଥିଲା ବୋଉ । ଘିଅଦୀପର ମହମହ ବାସ୍ନାରେ ଭିଜି ଚୂନ ଆଉ ଗେରୁ ମାଟିରେ ଲିପା ପୋଛା ହୋଇଥିବା ଚଉରା ଆଡ଼କୁ ମୁଗ୍ଧ ଦୃଷ୍ଟିରେ ଚାହିଁ ରହିଥିଲେ ହୃଷିକେଶ ବାବୁ । ଚିହ୍ନାଚିହ୍ନା ଲାଗୁଥିବା ତନୁପାତଳି ଝିଅଟିଏ ଆସି ସଲ୍ଲଜ ଜୁହାରଟିଏ ହେଲା, ଝିଅଟିର ଦୁଧ ଅଳତା ରଙ୍ଗର ଗୋରା ଚକଚକ ମୁହଁକୁ ଦେଖି ମୁହୂର୍ତ୍ତକ ପାଇଁ ହତବମ୍ଭ ହୋଇଗଲେ ହୃଷିକେଶ ବାବୁ । ସ୍ଥାନ କାଳ ପାତ୍ର ଭୁଲି ଅଧିର ହୋଇ କହିଉଠିଲେ "ସୁକୁମାରୀ ତୁ !"

ଝିଅଟି ଖିଲିଖିଲି ହୋଇ ହସିଉଠିଲା ।

ଅଁଶିଣ ସକାଳର ଗଙ୍ଗଶିଉଳୀ ଯେମିତି ବୁଣି ହୋଇଗଲା ଅଗଣାସାରା । ବୋଉ ମୁହଁ ବୁଲେଇ ହସିଲା କଣ୍ଠରେ କହିଲା "ତୁ ସୁକୁମାରୀ କାହାକୁ କହୁଛୁ ? ସିଏ ସୁକୁମାରୀ ନୁହେଁରେ, ସୁକୁମାରୀ ଝିଅ ବିନି । ଅବିକଳ ମାଆ ରୂପକୁ ଛଡ଼େଇ ଆଣିଛି । ତାର କାଲି ବାହାଘର ।"

ହୃଷିକେଶ ବାବୁ ନିର୍ମିମେଷ ନୟନରେ ଚାହିଁ ରହିଥିଲେ ବିନିକୁ । ସେଇ ଆଖି, ସେଇ ନାକ,ସେଇ ହସ । ଖାଲି ତଫାତ୍ ଏତିକି ଯେ ଇଏ ସୁକୁମାରୀ ନୁହେଁ, ବିନି । ବାତ୍ସଲ୍ୟ ମମତାରେ ସିକ୍ତ ହୋଇଗଲେ ହୃଷିକେଶ । ଅନେକ କିଛି କହିବାର ଭାବ ତାଙ୍କୁ ଆଛନ୍ନ କଲେ ସୁଦ୍ଧା ସେ କିଛି କହିପାରିଲେ ନାହିଁ । ଏକ ରୁଦ୍ଧ ଆବେଗରେ ବ୍ୟତିବ୍ୟସ୍ତ ହୋଇପଡ଼ିଲେ । ଝିଅଟାର କପାଳ ଉପରେ ହାତରଖି କେବଳ ଏତିକି କହିଲେ- "ଈଶ୍ୱର ତତେ ସୁଖରେ ରଖନ୍ତୁ ମାଆ ।"

ତିରିଶ ବର୍ଷ ତଳର ହଜିଲା ଦିନଗୁଡ଼ାକ ବାବନା ଭୂତ ଭଳି ତାଙ୍କ ଆଖି ଆଗରେ ନାଚିଗଲା । ଅତୀତର ଅପନ୍ତରା ବଣବୁଦା ଘେରା କିଆ ଗୋହିରୀ ଭିତରୁ ଗୋଟାଏ କରୁଣ ମୁହଁ ତାଙ୍କ ଆଖି ଆଗରେ ନାଚିଗଲା । ସେଇ ମୁହଁରେ ଲେସି ହୋଇଥିବା ଶତଶତ ଅଭିମାନ ଯଦି ବିନ୍ଦୁଏ ମାତ୍ର ଅଭିଯୋଗ ହୋଇପାରିଥାନ୍ତା ପୃଥିବୀରେ ଅନ୍ୟ କାହାରି କିଛି ହେଉବା ନହେଉ ବଦଳି ଯାଇଥାନ୍ତା ସେଇ ଅଭାଗିନୀର ଜୀବନ ଆଉ ହୃଷିକେଶଙ୍କ ଦୁନିଆ । କିନ୍ତୁ କିଛି ହେଲା ନାହିଁ । ବାପାଙ୍କ ଆଗରେ କିଛି କହିବାର ସତ୍‌ସାହସ ତାଙ୍କର ନଥିଲା । ସେଥିରେ ପୁଣି ସିଏ ଥିଲା ଖଣ୍ଡାୟତ ପରିବାରର ଝିଅ । ହୃଷିକେଶ ଜାତିରେ କରଣ । ତିରିଶ ବର୍ଷ ତଳର ସମ୍ଭ୍ରାନ୍ତ କରଣ ସମାଜର ଉଗ୍ର ଜାତ୍ୟାଭିମାନର ପେଷଣରେ ଦୁଇଟି ପ୍ରାଣର ଆବେଗ ଆକୁଳତା ପେଶି ହୋଇଗଲା, ସେଇ ହୀନକପାଳି ଝିଅ ସୁକୁମାରୀ କୋଉଦିନୁ ହଜିଗଲାଣି । କିନ୍ତୁ ହୃଷିକେଶଙ୍କ ବହିଥାକରେ ସଜା ହୋଇଥିବା କେଇଖଣ୍ଡ ଗଳ୍ପ ଉପନ୍ୟାସର ପୃଷ୍ଠାରେ ସୁକୁମାରୀର ଭୀରୁ କମ୍ପିତ ଅଙ୍ଗୁଳି ଅଙ୍କିତ ପେନ୍‌ସିଲ୍ ଗାର ଏବେ ବି ହୃଷିକେଶଙ୍କୁ ଅତିଷ୍ଠ କରିଦିଏ । ଅନ୍ୟମନସ୍କ କରିଦିଏ । ସେଇ ପୃଷ୍ଠା ଗୁଡ଼ିକରେ ପାପୁଲି ଚାଳନା କରି ସେ ଅନୁଭବ କରନ୍ତି ସୁକୁମାରୀ ଯେମିତି ମୁକୁଳା କରି ଦେଇଛି ନିଜକୁ ସେଇ ଶବ୍ଦମାନଙ୍କ ଭାବରେ, ଇଂଗିତରେ, ଅବବୋଧରେ । ସେଇ ଅକ୍ଷରମାନଙ୍କ ଭିତରେ ସେ ଏକାକାର ହୋଇ ଯାଇଛି, ସବୁ ଅପ୍ରାପ୍ତି ଭିତରେ ସେ ଏକ ପ୍ରାପ୍ତିର ପୂର୍ଣ୍ଣତା ଅନୁଭବ କରନ୍ତି । ତାଙ୍କୁ ମନେହୁଏ ସୁକୁମାରୀ ଅଛି, ତାଙ୍କ ପାଖେ ପାଖେ, ତାଙ୍କ ନିଃଶ୍ୱାସ ପ୍ରଶ୍ୱାସରେ, ଲୋମକୂପରେ, ସ୍ନାୟୁତନ୍ତ୍ରୀରେ, ପ୍ରତି ମୁହୂର୍ତ୍ତର ଚିନ୍ତା ଚେତନାରେ । ସେଇଥିପାଇଁ ଦୀର୍ଘ ତିରିଶ ବର୍ଷ ଧରି ମହାକାଳ ତାଙ୍କଠାରୁ ଗୋଟାଏ ମୁହୂର୍ତ୍ତ ପାଇଁ ବି ସୁକୁମାରୀର ସ୍ମୃତିକୁ ଦୁର୍ବଳ କରିପାରିନାହିଁ । ସେ ସଂସାର କରିଛନ୍ତି, ଘରେ ପତିବ୍ରତା ସ୍ତ୍ରୀ । ପୁତ୍ରକନ୍ୟାଙ୍କର ପିତା ହୋଇଛନ୍ତି, ସାମାଜିକ ପ୍ରତିଷ୍ଠା ପାଇଛନ୍ତି, ଏସବୁ ସତ୍ତ୍ୱେ ସୁକୁମାରୀର ଅସ୍ତିତ୍ୱ ତାଙ୍କର ସମଗ୍ର ସତ୍ତାକୁ ଆବୋରି ରଖିଛି ।

ସିଏ କିନ୍ତୁ ତା ପାଇଁ କିଛି କରିପାରି ନଥିଲେ । କିଛି କରିବାର ମାନସିକ ପ୍ରସ୍ତୁତି ନେବା ପୂର୍ବରୁ ନିୟତିର ନିଷ୍ଠୁର ଚକ୍ରାନ୍ତରେ ସବୁକିଛି ନିଃଶେଷ ହୋଇଯାଇଥିଲା ।

ସେଦିନ ଥିଲା ଗୋଟିଏ ଅଳସ ଅପରାହ୍ଣ । ଅନେକ ଆଶା, ଆନନ୍ଦ ସ୍ୱପ୍ନ ଓ ସମ୍ଭାବନାକୁ ନେଇ ସେ ଫେରୁଥିଲେ ସୁକୁମାରୀ ପାଖରୁ । ସୂକ୍ଷ୍ମକଳା ନୈପୁଣ୍ୟରେ ଭରପୂର ତା ନିର୍ମଳ ଭଲପାଇବାର ନିଦର୍ଶନ ହାତବୁଣା ରୁମାଲ ଖଣ୍ଡେ ତାଙ୍କ ଛାତି ପକେଟରେ ନିଜ ଅଧିକାର ସାବ୍ୟସ୍ତ କରୁଥିଲା । ସୁକୁମାରୀକୁ ସେ କେବେ କିଛି ପ୍ରତିଶ୍ରୁତି ଦେଇ ନଥିଲେ କି ସେ ସେମିତି ଦାବି କିମ୍ବା ଅନୁଯୋଗ ସେ ପର୍ଯ୍ୟନ୍ତ ତାଙ୍କ ପାଖରେ ବାଢି ନଥିଲା । ହୃଷିକେଶ କିନ୍ତୁ ନିଜ ଭାବନାରେ ନିଜେ ଅସ୍ଥିର ହୋଇ ପଡୁଥିଲେ । ଗୋଟାଏ ପୁରୁଣା ଘଷରା ସମାଜର ଧରାବନ୍ଧା ନିୟମ ପାଖରେ ନିଜକୁ ବନ୍ଧା ପକାଇବାକୁ ସେ ଚାହୁଁ ନଥିଲେ । ନୂଆକିଛି କରିବାର ଉନ୍ମାଦନା ସହ ସୁକୁମାରୀର ଆକର୍ଷଣ ସେଦିନ ତାଙ୍କୁ ଯେମିତି କେଉଁ ଦୂରନ୍ତ ଉପତ୍ୟକାକୁ ଭିଡ଼ି ନେଇଥିଲା । ସ୍ୱର୍ଗ, ମର୍ତ୍ତ୍ୟ, ପାତାଳକୁ ଏକାକାର କରିଦେବାର ଅମାପ ଶକ୍ତି ସେ ନିଜ ଭିତରେ ଖୋଜି ପାଉଥିଲେ । ସେ ଘରମୁହାଁ ହେଲେ । ଦାଣ୍ଡ ଅଗଣାକୁ ଅଙ୍କ ଝୁଙ୍କି ପଡ଼ିଥିବା କୃଷ୍ଣଚୂଡ଼ା ସ୍ତବକ ଗୁଡ଼ିକର ରକ୍ତିମା ତାଙ୍କୁ ସବୁଦିନଠାରୁ ବେଶି ମାଦକମୟ ମନେହେଲା । ଉହୁଙ୍କି ଉଠି ପତ୍ରସହ ଗୋଛାଏ କୃଷ୍ଣଚୂଡ଼ା ତୋଳିବାର ଇଚ୍ଛାକୁ ସେ ଦମନ କରିପାରିଲେ ନାହିଁ । ଦୃଷ୍ଟି ଊର୍ଦ୍ଧ୍ୱଗାମୀ ହେଲା । ସବୁଦିନେ ଦେଖୁଥିବା ଆକାଶଟା ତାଙ୍କୁ ସେଦିନ ଖୁବ୍ ଅନ୍ତରଙ୍ଗ ମନେହେଲା । ତାର ଅସୀମ ଆହ୍ୱାନ ତାଙ୍କୁ ଉତ୍ତାଳ କଲା । ଗୋଟାଏ ଦୃଢ ସଂକଳ୍ପ ଗ୍ରହଣ କରିବାର ପୂର୍ବ ମୁହୂର୍ତ୍ତଗୁଡ଼ାକ ଯେ ଏତେ ଉତ୍ତେଜନାମୟ ହୋଇପାରେ ଏତେ ପୌରୁଷଦୀପ୍ତ ହୋଇପାରେ ଏଇ ପ୍ରଥମ ଥର ସେ ଅନୁଭବ କରିଥିଲେ ।

ଦାଣ୍ଡ କବାଟ ଠେଲି ଲୀଳାୟିତ ଛନ୍ଦରେ ଘର ଭିତରକୁ ପାଦଦେଲା ବେଳକୁ ଶୋଇବା କୋଠରୀରୁ ଆସୁଥିବା ବାପାଙ୍କର ରୁକ୍ଷ କଠୋର କଣ୍ଠ ସ୍ୱରରେ ତାଙ୍କର ସକଳ କଳ୍ପନା ଓ ସଂକଳ୍ପ ପଥହୁଡ଼ା ହୋଇଗଲେ । ସେ ବରଫ ସ୍ତୁପଟିଏ ପାଲଟିଗଲେ ।

ବାପାଙ୍କର ସେଇ ଶେଷ କଥା ପଦକ ତୀରଭଳି ତାଙ୍କ ହୃଦତନ୍ତ୍ରୀକୁ ଦୀର୍ଣ୍ଣବିଦୀର୍ଣ୍ଣ କରିଦେଲା ।

ବାପା ବୋଉ ଉଦ୍ଦେଶ୍ୟରେ କହୁଥିଲେ । ତୁମ କୁଳାଙ୍ଗାରକୁ କହିଦେବ ପୁଣି ସେମିତି କିଛି ଯଦି ମୋ କାନରେ ପଡ଼େ, ମୁଁ ବିଷ୍ଣୁ ରାଉତର ଭିଟାମାଟି ଉଛନ୍ନ କରିଦେବି । ବିଲୁଆ କୁକୁର ବି ଝିଅଟାର ଗନ୍ଧ ପାଇବେନି ।

ହୃଷିକେଶ ସେତେବେଳକୁ ଅଗଣା ଟପି ବେଡ଼ରୁମ୍ ପାଖରେ ପହଞ୍ଚି ସାରିଥିଲେ । ବାପାଙ୍କ କଥାର କିଛି ମର୍ମ ବୁଝିବା ପୂର୍ବରୁ ତାଙ୍କ ସହ ଚାରିଚକ୍ଷୁ ହୋଇଗଲା । ଏ ପରିସ୍ଥିତି ପାଇଁ ଅପ୍ରସ୍ତୁତ ଥିଲେ ବାପା । ସେ ହିଁ ପ୍ରଥମେ ଦୃଷ୍ଟି ତଳକୁ କଲେ ଓ ଝଡ଼ବେଗରେ କୋଠରି ଭିତରୁ ବାହାରି ଯାଇଥିଲେ । ବୋଉ ଖଟବାଡ଼କୁ ଆଉଜି ମୁହଁରେ ଲୁଗାଦେଇ ସୁଁ ସୁଁ ହେଉଥିଲା ।

ହୃଷିକେଶ ଜାଣିଥିଲେ ବାପାଙ୍କ ପାଇଁ ଅସମ୍ଭବ କିଛି ନଥିଲା । ତାଙ୍କ ଲକ୍ଷ୍ୟ ହାସଲ ପାଇଁ ଯେ କୌଣସି ମାର୍ଗ ଆପଣେଇ ପାରନ୍ତି । ତା ପରଦିନ କାହାକୁ କିଛି ନକହି ସେ ସହରକୁ ଚାଲି ଆସିଥିଲେ । ଯଦିଓ ତାଙ୍କର ଶେଷ ପରୀକ୍ଷା ପାଇଁ ଆହୁରି ପନ୍ଦର ଦିନ ବାକି ଥିଲା । ପରୀକ୍ଷା ପରେ ବଞ୍ଚିବାର ରାହାଟିଏ ଖୋଜିବା ଥିଲା ତାଙ୍କର ପ୍ରଥମ ଦାୟିତ୍ୱ । ଯେଉଁ ରାହା ସୁକୁମାରୀକୁ ନିର୍ଭୟ ନିରାପତ୍ତା ଦେଇପାରିବ । ତାଙ୍କ ପୌରୁଷ ଓ ସ୍ୱାଭିମାନକୁ ସୁରକ୍ଷିତ କରିବ । ବାପାଙ୍କ ସହ କଥା ବଢେଇ ପରିସ୍ଥିତିକୁ ସେ ଜଟିଳ କରିବାକୁ ଚାହୁଁ ନଥିଲେ ।

ପରୀକ୍ଷା ପରେ ଚାକିରୀଟିଏ ଯୋଗାଡ଼ କରି ଗାଁକୁ ଫେରିଥିଲେ ହୃଷିକେଶ । କିନ୍ତୁ ସେତେବେଳକୁ ବହୁତ ବିଳମ୍ବ ହୋଇଯାଇଥିଲା । ସୁକୁମାରୀର ବାହାଘର ସରିଥିଲା । ତା' ବାହାଘରର ସଂପୂର୍ଣ୍ଣ ଖର୍ଚ୍ଚ ବାପା ବହନ କରିଥିଲେ ବୋଲି ସୁଦ୍ଧା ହୃଷିକେଶଙ୍କ ପାଖରେ ଅଛପା ରହିଲା ନାହିଁ । ତା' ପରଠାରୁ ଗାଁ ଭୂଇଁ ତାଙ୍କୁ ବିଷପିତା ମନେ ହୋଇଥିଲା । ସେ ଫେରି ଯାଇଥିଲେ ସହର । ତା'ପରେ ବାହାଘର । ପିଲାଛୁଆ ସଂସାର ଚାକିରି ଜୀବନରେ ସରକାରୀ ଦାୟିତ୍ୱ । ତାରି ଭିତରେ ଶାଶୁଘରେ ରୋଗୀଣା ପିଲାଟାକୁ ଜନ୍ମଦେଇ ନିଜ ପ୍ରତି ସଂପୂର୍ଣ୍ଣ ଉଦାସୀନ ଓ ଅବହେଳା କରୁଥିବା ସୁକୁମାରୀର ମୃତ୍ୟୁ ଖବର ବି ତାଙ୍କ ପାଖରେ ପହଞ୍ଚିଥିଲା । ଏ ନିଦାରୁଣ ସମ୍ବାଦର ଅନ୍ତର୍ଭେଦୀ ବେଦନାକୁ ବି ସେ ଅନ୍ତଃସ୍ଥ କରିଥିଲେ ।

ବାହାଘର ପରେ ସେ ସ୍ତ୍ରୀକୁ ନେଇ ସହରକୁ ଗଲେ ଯେ ଗଲେ । ବାପା ବଞ୍ଚିଥିବା ପର୍ଯ୍ୟନ୍ତ ସେ ଆଉ ଗାଁ ମାଟି ମାଡ଼ି ନଥିଲେ । ସେଇ ଯେ ପ୍ରଥମ ଥର ସେ ଆସିଲେ ପରିବାର ନେଇ ସେତେବେଳକୁ ବାପାଙ୍କର ପାଟି ପଡ଼ିସାରିଥିଲା । ଅବଶିଷ୍ଟ ଜୀବନ ଅନୁତାପ ଅନଳରେ ଦଗ୍ଧ ହୋଇ ଆସନ୍ନ ମୃତ୍ୟୁର ପ୍ରତୀକ୍ଷାରେ ଥିବା ବାପା ହୃଷିକେଶଙ୍କ ମୁହଁକୁ କରୁଣ ଦୃଷ୍ଟି ତୋଳି ଚାହିଁଲେ । ଧାରଧାର ଉଷୁମ ଲୁହ ଆଖିକୋଣ ଦେଇ ଗଡ଼ିପଡ଼ିଲା କାନମୂଳକୁ । ସେଇ ଲୁହଧାର ଯେମିତି ଖରସ୍ରୋତା ଗଙ୍ଗାଭଳି ବାପପୁଅଙ୍କ ଭିତରେ ଥିବା ଅପହଞ୍ଚ ଦୂରତ୍ୱକୁ ଘୋଷାଡ଼ି ନେଇଗଲା ବହୁ ଦୂରକୁ । ସବୁ ମାନ ଅଭିମାନ ଭୁଲ୍ ବୁଝାମଣାର ଧୂ ଧୂ ତତଲା ବାଲିପୂର୍ଣ୍ଣ ମରୁଭୂମିରେ ସ୍ୱଚ୍ଛ ନିର୍ମଳ ନିର୍ଝରିଣୀଟିଏ ସୃଷ୍ଟି କରିଦେଲା । ବାତ୍ସଲ୍ୟ ମମତାର ଅନ୍ତଃସଲୀଳା ଫଲ୍ଗୁଟିରେ ହୃଷିକେଶ ସଂପୂର୍ଣ୍ଣ ସିକ୍ତ ହୋଇଗଲେ କିନ୍ତୁ ବାପାଙ୍କର ସିଏ ଥିଲା ଶେଷ ଅଶ୍ରୁ ।

ସେସବୁ ଅତୀତ ହେଲାଣି କେଉଁ କାଳୁ । ସରକାରୀ ଚାକିରୀରୁ ଅବସର ନେବା ମୁହୂର୍ତ୍ତ ଆସିଗଲାଣି । ବେଦନା ବିକ୍ଷୁବ୍ଧ ଅତୀତର ଭୂତ ଏବେ ବି ତାଙ୍କୁ ଅର୍ନ୍ତଦହନରୁ ମୁକ୍ତିଦିଏ ନାହିଁ । ଗାଁ ମାଟିରେ ପାଦଦେଲେ ସେ ଆହୁରି ଅସ୍ୱସ୍ତି ଅନୁଭବ କରନ୍ତି । ସୁକୁମାରୀର ଅତୃପ୍ତ ଆତ୍ମା ତାଙ୍କ ପୌରୁଷକୁ ଧିକ୍କାର କଲାପରି ସେ ଅନୁଭବ କରନ୍ତି ତ ଆଉ କେତେବେଳେ ବାପାଙ୍କର ଅନ୍ତିମ ମୁହୂର୍ତ୍ତର ଅନୁତାପ ଜର୍ଜରିତ ଅଶ୍ରୁ ତାଙ୍କୁ ଅଭିଷିକ୍ତ କରିଦିଏ । କେଉଁଟା ଠିକ୍ କେଉଁଟା ଭୁଲ୍ ସେ ତଉଲି ପାରନ୍ତି ନାହିଁ । ତାଙ୍କର ଅଭିମାନ ଜର୍ଜରିତ ଅବହେଳା ଯେ ବାପାଙ୍କ ଆସନ୍ନ ମୃତ୍ୟୁର କାରଣ

ହେଲା ଏଭଳି ଏକ ବିଚାରବୋଧ ତାଙ୍କୁ ସନ୍ତାପିତ କରେ । ସେ ଅସ୍ତବ୍ୟସ୍ତ ହୋଇପଡ଼ନ୍ତି । ଛାଟିପିଟି ହୋଇ ପୁଣି ଫେରନ୍ତି ସହରକୁ । ବିଧବା ବୋଉ ନିର୍ମିମେଖି ପରି ଗାଁର ମାଟି କାମୁଡ଼ି ରହେ । ଯେତେ ବୁଝେଇଲେ ବି ସେ ବୁଝେ ନାହିଁ । ଏକ ଆହତ ଅଭିମାନରେ ସେ ବାପାଙ୍କ ପ୍ରତି କରିଥିବା ଅନ୍ୟାୟ ପାଇଁ ପରିଣତ ବୟସରେ ସୁଦ୍ଧା ତାଙ୍କୁ କ୍ଷମା କରିପାରନ୍ତି ନାହିଁ । ପ୍ରାୟଶ୍ଚିତ ସ୍ୱରୂପ ସକଳ ସାମର୍ଥ୍ୟ ଦେଇ ସେ ବୋଉକୁ ସୁଖି କରିବାକୁ ଚେଷ୍ଟା କରନ୍ତି । ଅବସର ପରେ ଗାଁରେ ବୋଉ ପାଖରେ ରହିବାର ନିଷ୍ପତ୍ତି ନେଇ ସେ ସସ୍ତ୍ରୀକ ଫେରି ଆସିଛନ୍ତି ଗାଁକୁ ।

ସକାଳୁ ସକାଳୁ ସୁକୁମାରୀର ଝିଅ ବିନିର ବାହାଘର ବନ୍ଦ ହୋଇଯିବା ଖବର ତାଙ୍କୁ ଆହୁରି ଯନ୍ତ୍ରଣାସିକ୍ତ କରିଦେଲା । ବିଚାରୀ ମାଆଛେଉଣ୍ଡ ଝିଅଟା । ତାଙ୍କରି ଉପରେ ଅଭିମାନ କରି ତା' ମାଆ ଅନ୍ୟର ହାତଧରି ନିଜ ଉପରେ ପ୍ରତିଶୋଧ ନେଲା ।

ସେ ସୁକୁମାରୀକୁ ସୁଖି କରିପାରିଲେ ନାହିଁ । ବାପାଙ୍କ ପସନ୍ଦର ବୋଲି ପତ୍ନୀ ସୁବର୍ଣ୍ଣା ଦେବୀଙ୍କୁ ବି ଅନ୍ତରର ସହ ଗ୍ରହଣ କରିପାରିଲେ ନାହିଁ ଶେଷ ପର୍ଯ୍ୟନ୍ତ । ଅପ୍ରୀତି ଅନାଦର ଅନୁରାଗହୀନ ଜୀବନ ବିତିଲା ତାଙ୍କର, ମାଦକତାହୀନ ଯାନ୍ତ୍ରିକ ଦାମ୍ପତ୍ୟ ଜୀବନରେ ଦୁଇଟା ପ୍ରାଣୀ ହନ୍ତସନ୍ତ ହେଲେ, ଏବେ ଝିଅ ବିନିର ପାଳି । ତା ଜୀବନରେ ଅଣଚାଶ ଝଡ଼ର ସୂଚନା । ନା କିଛି ଗୋଟାଏ କରିବାକୁ ହେବ । ଏତେବେଳେ ନିରବ ଦ୍ରଷ୍ଟା ହୋଇ ରହିଲେ ପୁଣି ଗୋଟାଏ ପିଢ଼ି ପଥହୁଡ଼ା ହୋଇଯିବ ।

ହିମକାକର ହୋଇଯାଇଥିବା ଚା' କପ୍‌ଟାକୁ ତଳେ ଥୋଇଦେଇ ସେ ଠିଆ ହୋଇପଡ଼ିଲେ ଓ କାଳିସୀ ଲାଗିଲା ଭଳି ଉଚ୍ଚସ୍ୱରରେ କହିଲେ- "ବୋଉ ! ବୋଉ ! ତୋ ନାତି ପାଇଁ ଭଲ ପାତ୍ରୀ ଖୋଜୁଥିଲୁ ପରା । ପାତ୍ରୀ ଯୋଗାଡ଼ ହୋଇଯାଇଛି । ଭଣ୍ଡାରୀକୁ ଡାକ୍ । ତୋ ନାତିକୁ ବରବେଶରେ ସଜେଇ ଦେଉ, ନାହାକ ପୁରୋହିତଙ୍କୁ କହ । ମଗଳାଷ୍ଟକ ପଢନ୍ତୁ । ମନ୍ତ୍ର ଉଚ୍ଚାରଣ କରନ୍ତୁ । ବିନିକୁ ମୁଁ ବୋହୂ କରି ଆଣିବି । ଝିଅଟା କ'ଣ ମଂଗୁଳାକନ୍ୟା ହୋଇ ରହିଯିବ । ଦେବ ! ଆରେ ଦେବ ! କୁଆଡ଼େ ଗଲୁରେ ! ମାହେନ୍ଦ୍ର ମୁହୂର୍ତ୍ତଟା ଗଡ଼ିଯିବ ଯେ ।"

ହେତୁ ପାଇଲା ଦିନରୁ ସଦା ଗମ୍ଭୀର ସ୍ୱଭାବର ବାପାଙ୍କୁ ଏମିତି ପ୍ରଗଳ୍ଭ କେବେ ଦେଖି ନଥିବା ଦେବ ଧାଇଁଆସି କହିଲା-

-କ'ଣ ହେଲା ବାପା ! ଏମିତି ପାଟି କାହିଁକି କରୁଛ ?

ହୃଷିକେଶ ବାବୁ ଦେବର କପାଳ ଉପରେ ହାତରଖି ନରମ ସ୍ୱରରେ କହିଲେ- ତୋ ବିନାନୁମତିରେ ମୁଁ ଗୋଟାଏ ବଡ଼ ନିଷ୍ପତ୍ତି ନେଇଯାଇଛି । ତୁ ମତେ କ୍ଷମା ଦେବୁ । ତତେ ବିନିକୁ ବାହାହେବାପାଇଁ ପଡ଼ିବ । ଦେବ ନିରବରେ ମୁହଁ ତଳକୁ କରି କହିଲା- ବାପା ! ଯାହା ତମର ଇଚ୍ଛା ।



# ଅଷ୍ଟିତଳର ନିଆଁ

ରତନୀ ଘର ଭିତରକୁ ପଶୁ ପଶୁ ପଦ ମେଲିଲା
"ଆଇର୍ ଭିତରେ ବାଇର୍ ଅଛି
ଖୋସାର ଭିତରେ ଚଉଁରୀ ଅଛି
ମନୁଷ୍ ମଲେ ଦିଅର୍ ଅଛି ।

ଏ ମନୁଷ୍‌ମାନେ ଆମକୁ ଡରେଇବେ ? ହାତଗୋଡ଼ ଅଛି ତ ସବୁଅଛି । ବିଭାହେଲୁ ବୋଲି କ'ଣ ମୁଣ୍ଡ ବିକି ଦେଇଛୁ ? ମାଟିକାମୁଡ଼ି ପଡ଼ି ରହିଥିବୁ ? ମନ କଲେ ରହ, ମନ ନାଇଁ କଲେ ନାଇଁ ।

ଶୁଭାଙ୍ଗୀ ଅନୁଭବ କଲା-ରତନୀର ତା ସ୍ୱାମୀ ସହ ଝଗଡ଼ା ହେଇଛି ନିଶ୍ଚୟ, ମାଡ଼ ବି ଖାଇଥାଇପାରେ ।

ରତନୀ ଏ ଘରର ଠିକା ଚାକରାଣୀ । ଆଦିବାସୀ ସ୍ତ୍ରୀଟିଏ । ସ୍ୱାମୀଟା କର୍ମକୋଢ଼ୀ । ପରିବାର ଚଳାଏ ରତନୀ । ଛୁଆମାନଙ୍କର ଦାୟିତ୍ୱ ସହ ସ୍ୱାମୀର ମଦପାଣି ଖର୍ଚ୍ଚ ବି ତାରି ରୋଜଗାରରୁ ହୁଏ । ଏସବୁ ସତ୍ତ୍ୱେ ମଦୁଆ ସ୍ୱାମୀଠୁଁ ଅଭଦ୍ର ଭାଷାରେ ଗାଳି ଶୁଣେ ମାଡ଼ ବି ଖାଏ ।

ମଦ୍ୟପ ସ୍ୱାମୀ ପ୍ରତି ବିକ୍ଷୋଦ୍‌ଗାର ରତନୀର ନୂଆ ନୁହେଁ । ଶହେବାର ତା ମୁହଁରୁ ଏମିତି ଶୁଣିଥିଲେ ବି ସେ ସେଇ ମଦ୍ୟପ ସ୍ୱାମୀଙ୍କୁ ଆବୋରି ଘରସଂସାର କରିଛି, ପ୍ରତି ବର୍ଷେ କିମ୍ବା ଦେଢବର୍ଷ ବ୍ୟବଧାନରେ ଗୋଟାଏ ଗୋଟାଏ ଛୁଆ ପେଟରେ ବୋହି ବୋହି ବୁଲୁଛି । ସେମାନଙ୍କୁ ଦୁନିଆକୁ ଆଣିଛି । ମାତୃତ୍ୱ ନିଭେଇଛି । ମଣ୍ଡେଇ, ପୁଷ୍ ପୁନେଇ, ଚଇତି ପରବରେ ସେଇ ରୋଗୀଣା ମେଡଙ୍ଗା ଛୁଆରୁ ଗୋଟେ ଧରି ମଦୁଆ ସ୍ୱାମୀ ସହ ଚକଚକିଆ ଶାଢୀ ପିନ୍ଧି ମଉଜ ମଜଲିସ୍ କରିଛି ।

ଅନ୍ୟଦିନ ହୋଇଥିଲେ ଶୁଭାଙ୍ଗୀ ରତନୀକୁ ତା ବର ସହ ଲାଗିଥିବା ଝଗଡ଼ାର କାରଣ ଖୋଳିତାଡ଼ି ପଚାରିଥାନ୍ତା । କ'ଣ କଲେ ତା ବରକୁ ସଜାଡ଼ି ପାରିବ ସେ ସଂପର୍କରେ ପରାମର୍ଶ ଦେଇଥାନ୍ତା । ସେ ଜାଣିଶୁଣି ନୀରବ ରହିଲା । ରତନୀ କିଛି ସମୟ ଅପେକ୍ଷା କଲା । ସେ ଶୁଭାଙ୍ଗୀ ପାଖରୁ କିଛି ଆଶ୍ୱାସନା ଚାହୁଁଥିଲା । ସ୍ୱାମୀ ପ୍ରତି ଥିବା ପୁଞ୍ଜିଭୂତ ଅସନ୍ତୋଷକୁ ଶୁଭାଙ୍ଗୀ ପାଖରେ ଅଜାଡ଼ି ଦେଇ ନିଜକୁ ହାଲ୍‌କା କରିବାକୁ

ଚାହୁଁଥିଲା । କିନ୍ତୁ କୌଣସି ଅନୁକୂଳ ସୂଚନା ନ ପାଇ ସେ ନିରୁତ୍ସାହିତ ହେଲା ଏବଂ ରୋଷେଇ ଘର ଆଡ଼େ ଯାଇ ବାସନ ମଜାରେ ମନ ଦେଲା ।

ରତନୀ ଚାଲିଗଲା ପରେ ସେ ସେମିତି ପଥର ପରି ବସି ରହିଥିଲା ସୋଫାରେ । ତା କାନରେ ଝଂକୃତ ହେଉଥିଲା ରତନୀ ମୁହଁରୁ ବାହାରିଥିବା ଦେଶୀୟା ଢଗ । ଢଗଟିର ଆକ୍ଷରିକ ଅର୍ଥ ଯାହା ହେଉନା କାହିଁକି ଶୁଭାଙ୍ଗୀ ବୁଝିଲା ଯେ ପ୍ରତ୍ୟେକ ସମସ୍ୟାର ଗୋଟିଏ ସମାଧାନ ଅଛି । ସମାଧାନ ନାହିଁ ତ ବିକଳ୍ପ ଅଛି । ସେ ପ୍ରକୃତିସ୍ଥ ହେଲା । ତା ଅନ୍ତର୍ଦ୍ୱନ୍ଦ୍ୱର ଅନ୍ତ କରି ଗୋଟାଏ ନିଷ୍କର୍ଷରେ ପହଞ୍ଚିଥିବାରୁ ସେ ନିଜକୁ ଖୁବ୍ ହାଲ୍‌କା ଅନୁଭବ କଲା ।

ନିର୍ଦ୍ଧାରିତ ସମୟର ଯଥେଷ୍ଟ ବିଳମ୍ବରେ ସୁବ୍ରତ ଫେରିଲା ଘରକୁ । ଶୁଭାଙ୍ଗୀ ଠିକ୍ ସେୟାହିଁ ଅନୁମାନ କରିଥିଲା । ଯେଉଁଦିନ ସେ ସୁବୋଧର ପ୍ରୋଜେକ୍ଟ ସଂପର୍କରେ କିଛି ଜାଣିବାକୁ ଚାହିଁଛି, ସୁବ୍ରତ ତାକୁ ନାନା ଆଳ ଦେଖାଇ ଟାଳି ଦେଇଛି । ଶୁଭାଙ୍ଗୀ ପାଖରୁ ଦୂରରେ ରହିଛି ଅଥବା ଟୁର୍‌ରେ ସହର ବାହାରକୁ ଦୁଇ ଚାରିଦିନପାଇଁ ଚାଲିଯାଇଛି । ବିବାହର ଦୁଇବର୍ଷ ବିତିଗଲାଣି । ସୁବୋଧର କାମ କମ୍ପାନୀ, ଅଫିସ୍, ପ୍ରୋଜେକ୍ଟ ସଂପର୍କରେ ବିନ୍ଦୁବିସର୍ଗ ଜାଣିପାରି ନାହିଁ ଶୁଭାଙ୍ଗୀ । ଏଥିପାଇଁ ତାକୁ ସାଙ୍ଗସାଥୀ ବନ୍ଧୁବାନ୍ଧବ ଆତ୍ମୀୟସ୍ୱଜନଙ୍କ ପାଖରେ କମ୍ ଅପଦସ୍ତ ହେବାପାଇଁ ପଡ଼ିନାହିଁ । ସୁବୋଧ ଘରେ ପାଦ ଦେଉ ଦେଉ ଗମ୍ଭୀର ହୋଇ ଶୁଭାଙ୍ଗୀ କହିଲା-

ହାତମୁହଁ ଧୋଇଆସ । ମୁଁ ଖାଇବାକୁ ବାଢୁଛି । ସୁବୋଧ ଏକାମୁହାଁ ହୋଇ ବେଡ୍‌ରୁମ୍‌କୁ ଯାଉଯାଉ କହିଲା, ମୁଁ ବାହାରୁ ଖାଇକି ଆସିଛି । ତମେ ଖାଇଦିଅ । ଶୋଇବା ଘର ସେଲ୍ଫ ଉପରେ ହାଣ୍ଡବ୍ୟାଗଟା ଥୋଇ ଦେଇ ସେ ଚାରିକାତ ମେଲେଇ ଖଟ ଉପରେ ପଡ଼ିଗଲା ।

ଶୁଭାଙ୍ଗୀ ଅନୁଭବ କଲା, କେବଳ ଖାଇବା ନୁହେଁ ଆନୁଷଙ୍ଗିକ ଭାବେ ଅନ୍ୟାନ୍ୟ କାର୍ଯ୍ୟ ବି ସେ ସଂପନ୍ନ କରିଆସିଛି । ସେଇ ଡ୍ରଇଂରୁମ୍‌ର ସୋଫାରେ ରାତିଟା କଟେଇ ଦେବାର ନିଷ୍ପତ୍ତି ସେ ନେଲା ।

ନିଶାସକ୍ତ ଥିବା ଅବସ୍ଥାରେ ସୁବ୍ରତ ସହ ପଦଟିଏ କଥା ହେବାପାଇଁ ସେ ଘୃଣାବୋଧ କରେ । ବିବାହର ବର୍ଷକ ପର୍ଯ୍ୟନ୍ତ ସବୁ ଠିକ୍ ଥିଲା । ଗୋଟିଏ ସାଧାରଣ ଶିକ୍ଷକ ପରିବାରର କନ୍ୟାଟିଏ ଯେତିକି ସ୍ୱପ୍ନ ଓ କଳ୍ପନା ନେଇ ଏ ଘରେ ପାଦ ଦେଇଥିଲା, ଆପାତତଃ ତାଠାରୁ ଯଥେଷ୍ଟ ଅଧିକ ପାଇଥିଲା । ରୋଜଗାରିଆ ସ୍ୱାମୀ, ରାଜପ୍ରାସାଦ ପରି ଘର, ଗାଡ଼ି, ଚାକର ପୂଜାରୀ, ସୁଖସ୍ୱାଚ୍ଛନ୍ଦ୍ୟ କେଉଁଥିରେ କିଛି ଅଭାବ ନଥିଲା । ଶାଶୁ ଶ୍ୱଶୁରଙ୍କ ସ୍ନେହ ସ୍ୱାମୀର ପ୍ରେମ କେଉଁଥିରେ ସେ ଊଣା ଅନୁଭବ କରୁ ନଥିଲା । ଏସବୁର ଗୋଟିଏ ପରିସୀମା ଥିଲା । ଯେତେଦିନ ପର୍ଯ୍ୟନ୍ତ ଶୁଭାଙ୍ଗୀ ସୁନା ପଞ୍ଜୁରୀର ଶାରୀଟିଏ ଭଳି କେବଳ ଏସବୁକୁ ଜୁଳୁ ଜୁଳୁ ହେଇ ଚାହିଁ ରହୁଥିଲା ସେ ପର୍ଯ୍ୟନ୍ତ ଶୁଭାଙ୍ଗୀ ସୁନାବୋହୂଟିଏ ଥିଲା ।

ସଖୀ କଣ୍ଢେଇଟିଏ ପରି ଶାଶୁ ଶ୍ୱଶୁର ସ୍ୱାମୀ ସମସ୍ତଙ୍କ ହାତମୁଠାରେ ଥାଇ ବିଭିନ୍ନ ମୁଦ୍ରାରେ ଆପଣାକୁ ପ୍ରକାଶ କରୁଥିଲା । ଶାଶୁ ଶ୍ୱଶୁର ଓ ସ୍ୱାମୀଙ୍କର ନିଭୃତ ଆଳାପଠୁଁ ନିଜକୁ ଦୂରରେ ରଖୁଥିଲା । ପାରିବାରିକ କିମ୍ୱା ପରିବାରର ବୃତ୍ତି ସଂପର୍କରେ ପ୍ରଶ୍ନ ପଚାରୁ ନଥିଲା । ସେ ପର୍ଯ୍ୟନ୍ତ ସେ ଶ୍ୱଶୁରଙ୍କର ଗେଲବସର ଶାଶୁଙ୍କର ଅଲିଅଳୀ ବୋହୂ ଥିଲା । ପୁଣି ସୁବ୍ରତ ପାଇଁ ଥିଲା ରୂପା ଝୁମୁକା । ଯେତେବେଳେ ଯେଉଁ ଢଙ୍ଗରେ, ଯେଉଁ ରଙ୍ଗରେ, ଯେଉଁ ବାଗରେ ବଜେଇଲେ ବି ରୁଣୁଝୁଣୁ ଶବ୍ଦରେ ତା ମନ ପୁରିଯାଉଥିଲା । ଲୋଟଣୀ ପାରାଭଳି ଶୁଭାଙ୍ଗୀ ଏ ଘରେ ଲୋଟିଯାଉଥିଲା । କେତେବେଳେ ଘୁମୁରୀ ଘୁମୁରୀ ଗୀତ ଗାଉଥିଲା ତ ଛମ୍‌ଛମ୍ ନାଚୁଥିଲା । ଜନ୍ମ ଜନ୍ମାନ୍ତର ପାଇଁ ଏ ଘରକୁ ମଧୁମନ୍ତ୍ରିତ କରିବାର ସଂକଳ୍ପ ନେଉଥିଲା ମନେ ମନେ । କିନ୍ତୁ ପ୍ରଥମ କରି ତାର ମୋହ ଭଙ୍ଗ ହେଲା ଯେଉଁଦିନ ସେ ଜାଣିଲା ତା ବାପାଙ୍କୁ ଭୁଲ୍ ତଥ୍ୟଦେଇ ତା ବାହାଘର କରାହୋଇଛି । ସୁବ୍ରତର ପ୍ରଥମ ସ୍ତ୍ରୀ କ୍ୟାନ୍‌ସର୍‌ରେ ନୁହେଁ ବରଂ ଅଗଣାରେ ଥିବା କୂଅରେ ପଡ଼ି ମୃତ୍ୟୁବରଣ କରିଛି । ତାହା ହତ୍ୟା କି ଆତ୍ମହତ୍ୟା ଏପର୍ଯ୍ୟନ୍ତ ରହସ୍ୟ ହୋଇ ରହିଯାଇଛି । ଏ ଖବର ତାକୁ ଦେଇଥିଲା ଘରର ପୁରୁଣା ଚାକରାଣୀ ପାର୍ ଓରଫ୍ ପାର୍ବତୀ ।

ଶୁଭାଙ୍ଗୀର ମନେହେଲା ସେ ପ୍ରତାରିତ ହୋଇଛି । ଜଘନ୍ୟ ଷଡ଼ଯନ୍ତ୍ରର ଶୀକାର ହୋଇଛି । ସେ ଅନୁଭବ କଲା ସତେ ଯେମିତି ଏଭରେଷ୍ଟ ଶୃଙ୍ଗ ଉପରେ ବିଜୟ ପତାକା ଉଡ଼ାଉ ଉଡ଼ାଉ ସେ ଭୁସ୍ କରି ଗଳିପଡ଼ିଛି ରସାତଳକୁ । ତାର ସମଗ୍ର ସତ୍ତା ଖଣ୍ଡ ବିଖଣ୍ଡିତ ହୋଇଯାଉଛି । ନିଜକୁ ଖୋଜୁଛି ଆକାଶରେ, ପବନରେ, ସମୁଦ୍ରରେ, ବଣରେ, ପାହାଡ଼ରେ । ନିଜକୁ ପାଇବା ପରିବର୍ତ୍ତେ ଗୋଟାଏ ଭୟଙ୍କର ଅନ୍ଧାର କ୍ରମେ ଘନୀଭୂତ ହୋଇଯାଉଛି । ବ୍ଲାକ୍ ହୋଲ୍ ଭଳି ସେଇ ଅନ୍ଧାରର କରାଳ ଗହ୍ୱର ଭିତରେ ତାର ଅସ୍ତିତ୍ୱ ବିଲୀନ ହୋଇଯାଉଛି ।

ମା କ'ଣ ହେଲା ତମର ? ଏମିତି ତାଟକା ହେଲାଭଳି ଦେଖୁଛ କ'ଣ ? ଏଇଥିପାଇଁ ମୁଁ ତୁମକୁ ଏସବୁ କିଛି କହୁ ନଥିଲି । ଉଚ୍ଚ ସ୍ୱରରେ କହିଥିଲା ପାର ।

ସମ୍ବିତ୍ ଫେରିପାଇଥିଲା ଶୁଭାଙ୍ଗୀ । ଶୁଭାଙ୍ଗୀ ପାରକୁ ପଚାରିଥିଲା-ତାହେଲେ ଏ କ୍ୟାନ୍‌ସର କଥା ? ପାର ସ୍ୱର ନରମ କରି ଚୁପ୍‌ଚାପ୍ କହିଲା-ସୁନା ଖଡ଼ିକା ପରି ବୋହୂ । ମରିବା ପୂର୍ବଦିନ ପର୍ଯ୍ୟନ୍ତ ଝଟ୍ ଝଟ୍ ଦିଶୁଥିଲେ । ଦିନେ ହେଲେ ତାଙ୍କର ଦେହ ମୁଣ୍ଡ ହେବାର କେହି ଦେଖିନାହାଁନ୍ତି । ତାଙ୍କୁ କାହିଁକି କ୍ୟାନ୍‌ସର୍ ହେବ ମ ମା ! ମୁଁ ପରା ତାଙ୍କ ପାଖେ ପାଖେ ଥିଲି ।

ତେବେ ଏମିତି କାହିଁକି ହେଲା ? କହିଲା ଶୁଭାଙ୍ଗୀ । କିଏ ଜାଣିଛି ମାଆ ? ଏଡ଼େ ସୁନ୍ଦର ମଣିଷଟା, ରୂପରେ କ'ଣ ଗୁଣରେ କ'ଣ କେହି କିଛି ବାଛିବାକୁ ନାହିଁ । ରାତି ପାହିଲା ବେଳକୁ ସବୁ ଶେଷ । ଲୁଗା କାନିରେ ଆଖି ପୋଛିଲା ପାର ।

ଅଗଣା କୂଅ ଯେମିତି ପୁଣି ଗୋଟାଏ ବଳି ନଖାଏ । ସେହିପରି କିଛି ଗୋଟାଏ କରିବାକୁ ହେବ । ସକାଳେ ଗୋଟାଏ ଅଜଣା ଫୋନ୍ କଲ୍ ସାଙ୍ଗକୁ ତା ସାଙ୍ଗ ସୁପ୍ରିୟା କହିଥିବା କଥା ତାଳମେଳ ଖାଉଛି । ତା ସାଙ୍ଗକୁ ପାରର ବୟାନ ।

ଅଜଣା ଫୋନ୍ କଲ୍‌ରେ ନାରୀ କଣ୍ଠଟିଏ ବିକଳ ହୋଇ କହୁଥିଲା- "ମୋ ଝିଅକୁ ଫେରେଇ ଦିଅ ବାବୁ ! ତାର ଚାକିରୀ ବାକିରୀ ଲୋଡ଼ା ନାହିଁ । ଏସନ ଜମି ଦି ଗୁଣ୍ଠ ଛଡ଼େଇ ମୁଁ ତାକୁ ବାହାଦେଇ ଦେବି । ମୋର ଗୋଟିଏ ବୋଲି ଝିଅ ।

ସୁପ୍ରିୟା କହୁଥିଲା ସୁବ୍ରତର କୁଆଡ଼େ ଏନ୍.ଜି.ଓ ନାଁରେ ଗୋଟାଏ ସେକ୍ସ ର୍‌ୟାକେଟ୍ ଅଛି । ତା ଛଡ଼ା ଗାଁ ଗହଳର ଅଭାବୀ ପରିବାରର ଝିଅମାନଙ୍କୁ ଚାକିରୀ ଲୋଭ ଦେଖାଇ ଅନ୍ୟ ପ୍ରଦେଶକୁ ଚାଲାଣ କରୁଛି ।

ମୋ ସ୍ୱାମୀ ନାଁରେ ମିଛ ଅପବାଦ ଦେଉଛୁ ବୋଲି ସୁପ୍ରିୟାକୁ କଡ଼ାକରି ଦୁଇପଦ ଶୁଭାଙ୍ଗୀ ଶୁଣାଇ ଦେଇଥିଲା ସିନା କିନ୍ତୁ ସନ୍ଦେହର ଯେଉଁ ବୀଜ ସେ ବପନ କରିଥିଲା ତାହା ଅଙ୍କୁରିତ ହୋଇ ବିରାଟ ମହୀରୁହ ଆକାର ଧାରଣ କରୁଥିଲା ।

ଶୁଭାଙ୍ଗୀ ବ୍ୟସ୍ତ ହୋଇପଡ଼ିଲା । ତା ପରଦିନ ସୁବ୍ରତକୁ ସେ ସିଧାସଳଖ କହିଲା-ଘରେ ବସି ବସି ବହୁତ ବିରକ୍ତ ଲାଗୁଛି । ତମ ଅଫିସ୍‌ରେ ମତେ କିଛି କାମଦିଅ । ମୁଁ କରିବି ।

ସୁବ୍ରତ ତାଚ୍ଛଲ୍ୟ କରି କହିଲା-କି କାମ ତମେ ଜାଣିଛ କହିଲ ? ଏଥିପାଇଁ ବହୁତ ଏକ୍ସପେରିଏନ୍‌ସ ଦରକାର । ତମେ ସେ ସବୁ ପାରିବନି । ମାଆବାପାଙ୍କ ସେବା କର । ରୋଷେଇବାସ ଘରକାମରେ ମନଦିଅ ।

ଶୁଭାଙ୍ଗୀ ତଥାପି ନିରାଶ ନହୋଇ କହିଲା-ମତେ କାମ ଶିଖାଅ । ମୁଁ ପାରିବି ।

ସୁବ୍ରତ ବିରକ୍ତ ହୋଇ କହିଲା-ତମ କାମ ତମେ କର । ଅନ୍ୟମାନଙ୍କ ବ୍ୟାପାରରେ ହସ୍ତକ୍ଷେପ କରିବାକୁ ଚେଷ୍ଟା କରନାହିଁ । ତମ୍ ତମ୍ ହୋଇ ସେ ଘରୁ ବାହାରି ଯାଇଥିଲା ।

ସୁବ୍ରତ ଚାଲିଗଲା ପରେ ଶାଶୁ ମୁହଁ ଛିଞ୍ଚାଡ଼ି କହିଲେ-କାହିଁକି ପୁଅଟା ସାଙ୍ଗରେ ଏମିତି ଲଗେଇଛୁ ? ଖାଇବା ପିଇବା ଶାଢୀ ଗହଣା କୋଉଥିରେ ସେ ତୋର ଅଭାବ ରଖିଛି ଯେ ପୁଅଟା ଘରେ ପାଦ ଦେଲେ ତାକୁ ବିରକ୍ତ କରୁଛୁ ? ଚାକିରୀ ଚାକିରୀ ହେଉଛୁ ?

ଶୁଭାଙ୍ଗୀ ଆନ୍ତରିକତା ଭାବ ଦେଖାଇ କହିଲା-ମା ! ଶାଢୀ ଗହଣାର ପ୍ରଶ୍ନ ଏଠି ଉଠୁନାହିଁ । ମୁଁ ଶୁଣୁଛି, ଆପଣଙ୍କ ପୁଅ ଅବାଟକୁ ଯାଉଛନ୍ତି । ଅଫିସ୍ ନାଁରେ କେତେଟା ଭୁଲ୍‌କାମ ସେ କରୁଛନ୍ତି । ମୁଁ ତାଙ୍କୁ ସେ ରାସ୍ତାରୁ ଫେରେଇ ଆଣିବାକୁ ଚେଷ୍ଟା କରୁଛି ।

ଚିହିଁକି ଉଠିଲେ ଶାଶୁ । ତୋ ସାହସ କିଛି କମ୍ ନୁହେଁ ତ । ମୋ ପୁଅ କ'ଣ କଲା ନ କଲା ସେ ବିଷୟରେ ମୁଣ୍ଡ ଖେଳେଇବା ତୋର ଆବଶ୍ୟକ ନାହିଁ । ତୁ ଏ ଘରର ବୋହୂ । ମାଲିକାଣୀ ନୁହେଁ । ପାଟି ଶୁଣି ଶ୍ୱଶୁର ଆସିଲେ । କହିଲେ-ସବୁ ଭୂମିକାର

ଗୋଟାଏ ସୀମା ଅଛି । ସେ ସୀମା ଭିତରେ ରହିବାପାଇଁ ଶିଖ । ନହେଲେ କିଏ ଜାଣେ ! କେତେବେଳେ କି ଅଘଟଣ ଘଟିବ ?

ଶୁଭାଙ୍ଗୀ ଉତ୍ତେଜିତ ହୋଇଉଠିଲା । କି ଅଘଟଣ ଘଟିବ ? ଅଗଣା କୂଅରେ ଆଉ ଗୋଟାଏ ଶବ ଭାସିବ ! ଏଯାତ ! ନିଜକୁ ନିୟନ୍ତ୍ରଣ କଲା ।

ଶୁଭାଙ୍ଗୀ ଅନୁଭବ କଲା ଏଘର ଆଉ ତାପାଇଁ ଶାଶୁଘର ହେଇନାହିଁ । ଏଇ ମୁହୂର୍ତ୍ତରୁ ଯମପୁର ପାଲଟିଗଲା । ଶ୍ୱଶୁରଙ୍କ ଇଙ୍ଗିତ ସେ ଠିକ୍ ବୁଝିଲା । ଆଉ ବେଶି ରିସ୍କ ନେବାପାଇଁ ସେ ଚାହୁଁ ନଥିଲା ।

ଦୁଇ ଚାରିଖଣ୍ଡ ଶାଢୀ ଓ ନିତ୍ୟ ବ୍ୟବହାର୍ଯ୍ୟ ଦ୍ରବ୍ୟ କେତୋଟି ଗୋଟାଏ ସୁଟ୍‌କେଶ୍‌ରେ ଭରିଲା । ଶାଶୁ ଶ୍ୱଶୁର ଭୋଜନ ସାରି ବିଶ୍ରାମ ନେଉଛନ୍ତି । କାହାକୁ କିଛି ନ କହି ସେ ସୁଟ୍‌କେଶଟି ଧରି ବାହାରକୁ ବାହାରି ପଡ଼ିଲା । ରିକ୍ସାଟାଏ ଡାକି ରିକ୍ସାବାଲାକୁ ନିଜର ଗନ୍ତବ୍ୟ ସ୍ଥଳ କହିଲା ।

କଲିଂ ବେଲ୍ ଶବ୍ଦରେ ଦରଜା ଖୋଲିଲା ସୁପ୍ରିୟା । ଅସମୟରେ ଶୁଭାଙ୍ଗୀ ହାତରେ ସୁଟ୍‌କେଶ୍ ଧରିଥିବା ଅବସ୍ଥାରେ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲା-

କୁଆଡ଼େ ବାହାରିଛୁ ନା କ'ଣ ?

ଶୁଭାଙ୍ଗୀ ଗମ୍ଭୀର ହୋଇ କହିଲା, କୁଆଡ଼େ କାହିଁକି ? ତୋ ଘରକୁ ତ ଆସିଛି । ମୋତେ କିଛିଦିନ ଏଠି ତୋ ଘରେ ଆଶ୍ରୟ ଦେବୁ କି ନାହିଁ କହିଲୁ ? ପେୟିଂ ଗେଷ୍ଟ ହୋଇ ରହିବି ।

ସୁପ୍ରିୟା କହିଲା-ଧେତ୍, ସବୁବେଳେ ତୋର ସେମିତି କଥା । ପେୟିଂ ଗେଷ୍ଟ, ପେୟିଂ ଗେଷ୍ଟ । ତୁ ଯେତେଦିନ ଚାହିଁବୁ ତୋର ଏ ବାନ୍ଧବୀର ଦ୍ୱାର ସେତେଦିନ ପର୍ଯ୍ୟନ୍ତ ଖୋଲା ଅଛି । ଆଗ କହ ତ ! ହଠାତ୍ ଏମିତି ନିଷ୍ପତ୍ତିଟିଏ କାହିଁକି ନେଲୁ ?

କ'ଣ ଏଇ ଗେଟ୍ ପାଖରେ ହିଁ ତତେ ସବୁ କହିଦେବି ? ଘର ଭିତରକୁ ଡାକିବୁନି ?

ଆରେ ହଁ ତ ! ଚୈତନ୍ୟୋଦୟ ହେଲା ସୁପ୍ରିୟାର । ସେ ଏକରକମ କୁଣ୍ଢେଇ ଧରି ତାକୁ ଘର ଭିତରକୁ ନେଇଗଲା ।

ତା ପରଦିନ ଦୁଇବାନ୍ଧବୀ କଫି ଦୁଇକପ୍ ଧରି ସକାଳ ସମାଚାର ଦେଖୁଥିଲେ । ସେଦିନ ସମାଚାର ମୁଖ୍ୟାଂଶରେ ଥିଲା-ସହରର ଏକ ବଡ଼ ଧରଣର ସେକ୍ସ ର୍ୟାକେଟ ଠାବ ଓ ମୁଖ୍ୟ ଅପରାଧୀ ସୁବ୍ରତ ପଟ୍ଟନାୟକ ଗିରଫ ।

ସୁପ୍ରିୟା ଶୁଭାଙ୍ଗୀର ପିଠିରେ ହାତ ଆପୁଡ଼େଇ କହିଲା ସାବାସ୍ ଶୁଭାଙ୍ଗୀ ! ସାବାସ୍ ! କେବଳ ଟିଭି ପରଦା ନୁହେଁ, ସେଦିନର ସବୁ ଦୈନିକ ସମ୍ବାଦପତ୍ରର ପୃଷ୍ଠା ମଣ୍ଡନ କରିଥିଲା ଏହି ଚାଞ୍ଚଲ୍ୟକର ଖବର ।



# ମାଟି ବନ୍ଦନା

ଲଛମନ ହାତକୁ ଟଙ୍କା ବିଡାଟା ଧରେଇ ଦେଇ ସାଉକାର ଚଢିଗଲା ଟ୍ରକ୍ ଉପରକୁ । ସେତେବେଳକୁ ପର୍ବତ ପ୍ରମାଣେ ଗଦା ହେଇଥିବା ମକା ଟ୍ରକ୍ ଗର୍ଭରେ ପଶିସାରିଥିଲା । ଗୋଟାଏ ଆସୁରିକ ନାଦ କରି ସେ ମାଡ଼ିଚାଲିଲା ଆଗକୁ । ଲଛମନ ହାତରେ ଟଙ୍କା । ହଜାର ନୁହେଁ କି ଦୁଇ ହଜାର ନୁହେଁ, ଏକାବେଳକେ ଲକ୍ଷେ ଟଙ୍କା । ତା ଜୀବନକାଳ ଭିତରେ ଏତେ ଟଙ୍କା ସେ କେବେ ଦେଖି ନଥିଲା । ତାକୁ ସବୁ ସ୍ୱପ୍ନପରି ଲାଗୁଥିଲା । ପାଞ୍ଚ ଏକର ପାହାଡ ତଳ ଜମି । ଉପରେ ବର୍ଷା ହେଲେ ପାଣି ଜମିଯାଏ । ବର୍ଷାର ଅଣ୍ଟ ନିଅଣ୍ଟକୁ ଭୟ ନାହିଁ । ମରୁଡ଼ି ତାକୁ ବାଧେ ନାହିଁ । ବର୍ଷସାରା ଧାନ କାନ୍ଦୁଲ ମାଣ୍ଡିଆ ମୁଗ ବିରି ଜହ୍ନିକାକୁଡ଼ି ବୋଇତାଳୁ ଝୁଡୁଙ୍ଗ ଶିମ୍ବ ଆଦାୟ ଚାଲିଥାଏ । ତଥାପି ଏମିତି ଏତେ ପରିମାଣର କଞ୍ଚାପଇସା କେବେ ଦେଖି ନଥିଲା । କୃତଜ୍ଞତାରେ ତା ମୁଣ୍ଡ ନଇଁଗଲା ସାଉକାର ପ୍ରତି । ଯିଏ ତାକୁ ମକାଚାଷ କରିବାକୁ ଏକରକମ ବାଧ କରିଥିଲା । ପୁଅଟାକୁ ବି ମନେମନେ ତାରିଫ୍ ନ କରି ରହିପାରିଲାନି । ଆଜିକାଲିକା ପିଲା । କିନ୍ତୁ ବୁଦ୍ଧି ବେଶ୍ ପାକଳ । ମୂଳରୁ ତ ଲଛମନ କାଠି ପାଞ୍ଚଣ ଛୁଆଁଇ ଦେଉ ନଥିଲା । ମକାଚାଷ ନାଁ କହିଲା ବେଳକୁ ଅଜ୍ଞାନ ହେଉଥିଲା । ମାତ୍ର ପୁଅ ସୋମନାଥ ଆଉ ସାଉକାର ସାଇରାଜୁ ମିଶି ତାକୁ ବୁଝେଇଲେ । ସାଉକାର ଆଗ ତା ହାତରେ ପାଞ୍ଚଶହ ଟଙ୍କା ମଦପାଣି ଖର୍ଚ୍ଚ ପାଇଁ ଦେଲା । ବହୁତ କଷ୍ଟରେ ରାଜି ହେଇଥିଲା ଲଛମନ । ଏବେ ସ୍ୱୟଂ ଲକ୍ଷ୍ମୀ ଠାକୁରାଣୀ ତା ଆଞ୍ଜୁଳାରେ ଆସି ଧରା ଦେଇଛନ୍ତି । ସେ ଖୁସିରେ ଅଧିର ହୋଇପଡ଼ିଲା ।

ସାଉକାର ଠିକ୍ କହିଥିଲା । ଟଙ୍କିକିଆ ଚାଉଳ ଯାହାକୁ ଯେତେ । ପଇସା ଥିଲେ ହେଲା । ବର୍ଷସାରା ସରକାର ଯୋଗାଉଛନ୍ତି । ଗୋଟାଏ ଦିନ କୁଲିଗଲେ ମାସଟା ସାରା ପାଇଁ ଚାଉଳ ଯୋଗାଡ଼ ହେଲା । ଧାନ ମାଣ୍ଡିଆ ଚାଷ ନକଲେ କୋଉ ଯୁଗ ଅଚଳ ହୋଇଯାଉଛି ଯେ । ଲଛମନ ମନେ ମନେ ବିଡ଼୍ ବିଡ଼୍ ହେଲା । ସତରେ ସେ ବୁଦ୍ଧିମାନର କାର୍ଯ୍ୟ କରିଛି । ସେ ଏଥର ସାଉକାର ହେଇଯିବ ।

ସୋମନାଥ ବାପ ପାଖକୁ ଲାଗି ଆସିଲା । ଅଳ୍ପ ହସି କହିଲା, ମୋତେ ଭଲ ଗାଡ଼ି ଖଣ୍ଡେ କିଣିଦେବ ବାବା ! ଏ ଖଣ୍ଡିଆ ସାଇକେଲ୍ ମୁଁ ଆଉ ଚଲେଇବି ନାଇଁ । ବୁଢ଼ାବାପ ଖୁସି ଥିଲା । କହିଲା କେତେ ଟଙ୍କା ଦରକାର ହବ ?

ପୁଅ କହିଲା-ପଚାଶ ହଜାର ହେଲେ ହେଇଯିବ ।

ଲଛମନ ପୁଅ ହାତକୁ ପାଞ୍ଚଟା ଦଶହଜାର ଟଙ୍କିଆ ବିଡା ବଢେଇ ଦେଇ କହିଲା, ଦେଖି ଚାହିଁ କିଣିବୁ । ନ ହେଲେ ଶଳେ ଠକିନେବେ । ସାନପୁଅ ଗେହ୍ଲେଇ ହେଇ କହିଲା, ବାବା, ମୋର ମୋବାଇଲ୍‌ଟିଏ ଦରକାର । ଲଛମନ କହିଲା, କେତେ ଟଙ୍କା ହେଲେ ହେବ ତୋ ମୋବାଇଲ୍? ସାନପୁଅ କହିଲା-ମୋ ସାଙ୍ଗମାନେ ତ ଦଶହଜାର ପନ୍ଦର ହଜାର ଟଙ୍କାର ମୋବାଇଲ୍ ଧରୁଛନ୍ତି । ମୋର ପାଞ୍ଚ ହଜାର ହେଲେ ଚଳିବ । ଲଛମନ ସାନପୁଅ ହାତକୁ ବଢେଇଦେଲା ପାଞ୍ଚହଜାର ଟଙ୍କା ।

ବୁଢୀର ସୁନା ସୋରିଷିଆ ମାଳୀ କୋଡ଼ିଏ ହଜାର ଟଙ୍କାରେ ବନ୍ଧା ପଡ଼ିଥିଲା ସାର କୀଟନାଶକ ଓ କୁଲିମଜୁରୀ ଦେବାପାଇଁ । ସୁଧ ମୂଳ ହେଇ ପଚିଶି ହଜାର ଟଙ୍କା । ସାଉକାର ଘରୁ ଲଛମନ ମୁକୁଳେଇ ଆଣିଲା । ଝିଅର କିଛି ଦାବୀ ନଥିଲା । ତଥାପି ବୁଢା ତା ନାକପାଇଁ ହଳେ ସୁନାର ଲବଙ୍ଗ କଢି କିଣିଦେଲା । ତା ହାତରେ ହଜାରେ ଟଙ୍କା । ମା' ଝିଅଙ୍କ ପାଇଁ ଦୁଇଖଣ୍ଡ ଶାଢୀ କିଣିବାକୁ ବି ଭୁଲିଲା ନାହିଁ । ଟଙ୍କା ତା ବାଟେ ବାଟେ ଚାଲିଗଲା । ନିଜେ ଛଅମାସ ପର୍ଯ୍ୟନ୍ତ ଖାଦ୍ୟ ଖାଇଲା ନାହିଁ କି ପାଣି ପିଇଲା ନାହିଁ । ଖାଦ୍ୟ ଓ ପାନୀୟ ଦୁଇଟିଯାକ ଆବଶ୍ୟକତା ତାର ମେଣ୍ଟି ଯାଉଥିଲା ମଦ ଭାଟିରୁ ।

ତା ପରବର୍ଷ ମକାଚାଷ ବେଳକୁ ଲଛମନ ହାତରେ ବିହନ ପାଇଁ ବି ପଇସା ନଥିଲା । ସାଉକାର ଭାରି ଦରଦୀ ମଣିଷ । ସେ ଠିକଣା ସମୟରେ ଆସି ପହଞ୍ଚିଗଲା । କଣ୍ଠରେ ଆପଣାର ଭାବ ଫୁଟେଇ କହିଲା- ଲଛମନ୍ ! ତୁ ଚିନ୍ତା କାହିଁକି କରୁଛୁ ? ତୋ ବିହନ, ସାର, ଖତ, ଔଷଧ, କୁଲି ଖର୍ଚ୍ଚ ସବୁ ମୁଁ ଦେବି । ଆହୁରି କିଛି ହାତଖର୍ଚ୍ଚ ଚାହିଁଲେ ବି ଦେବି । ତୁ କିନ୍ତୁ ମକା ଅମଳ ହେବାପରେ ଆଉ ଅନ୍ୟ ବେପାରୀଙ୍କୁ ଦେବୁନି । ମୁଁ ସବୁ କିଣିନେବି ।

କୃତଜ୍ଞତାରେ ବତୁରିଗଲା ଲଛମନ । ଦୁଇ ହାତ ଯୋଡ଼ି କହିଲା, ମାହାପ୍ରୁ ! ତମର ଦୟା ଏମିତି ମୋ ଉପରେ ଥାଉ । ମୋ ପରିବାର ଉପରେ ଦୃଷ୍ଟି ଦେଇଥାଅ ସାଉକାର ।

ସାଉକାର ଦୟା କଲା ଲଛମନ ପରିବାରକୁ । ଜମିରେ ଆଗକୁ ଫଳିବାକୁ ଥିବା ମକାର ମୂଲ୍ୟ ବି ନିର୍ଦ୍ଧାରଣ କରିଦେଲା । କାଗଜ ଖଣ୍ଡକରେ ଲଛମନର ଟିପ ଚିହ୍ନ ନେଇ ୧୦ ହଜାର ଟଙ୍କା ଗଣିଦେଲା । ଗଲାବେଳେ କହିଗଲା, ଏଥିରେ ଖତସାର କିଣିବୁ । ଆଉ ଦରକାର ହେଲେ ମୋତେ କହିବୁ । ଲାଜ କରିବୁ ନାହିଁ ।

ଲଛମନ ପାଇଥିବା ଟଙ୍କାରୁ ଅଧାରୁ ଟିକେ ଅଧିକ ଚାଷ କାମରେ ଲାଗିଲା । ବାକିତକ ସିଧା ଚାଲିଗଲା ଭାଟିକି । ସାଉକାର କଥା ଦେଇଛି, ଯେତେବେଳେ ଯାହା ଦରକାର ସେ ଦେବ । ସେ ନିଶ୍ଚିନ୍ତ ହୋଇଗଲା । ସାଉକାର ବଡ଼ ଭଲଲୋକ । ଘରଲୋକ ପରି ପଇସା ଗଣିଦେଉଛି । ଟିକେ ବି କୁଣ୍ଠାପଣ ନାହିଁ । ଶହେ ଟଙ୍କାରେ ଦଶଟଙ୍କା ସୁଧ ।

ସୁନା ବାନା ବନ୍ଧା ଦେବା ଦରକାର ନାହିଁ । ସବୁ କିଛି ବିଶ୍ୱାସରେ । ମକା ଅମଳ ହେଲେ ସେ ସେଇ ଖଳାରୁ ହିସାବ କରି ନେଇଯିବ ।

ଗତବର୍ଷ ଚାଷରେ ମାଟିଟା ଟିକେ ଦୁର୍ବଳ ହୋଇପଡ଼ିଛି । ଏ ବର୍ଷ ଦୁଇଗୁଣା ଖତସାର ଲୋଡା ପଡ଼ିଲା । ସେତକ ବି ସାଉକାର ଦେଲା ।

ଫସଲ ଅମଳ ହେଲା । ସାଉକାର ଲୋକ ପଠେଇଲା ହିଡମୁଣ୍ଡକୁ । ନିଜେ ଟ୍ରକ୍ ଧରି ଆସିଲା ଖଳାକୁ । ସାଙ୍ଗରେ ଧରମ୍ କଣ୍ଟା ବି ଆଣିଥିଲା । ମକା ଓଜନ କରି ବସ୍ତାରେ ଭରିଲା । ଟ୍ରକ୍ ଲୋଡ଼ କଲା । ଲଛମନ ଓ ତା ପରିବାର ଲୋକ ବିଭୋର ହୋଇ ଚାହିଁ ରହିଥିଲେ । ଗତବର୍ଷ ପରି ଏ ବର୍ଷ ବି ସମସ୍ତଙ୍କ ମନ ଭିତରେ କିଛି କିଛି ସ୍ୱପ୍ନ ଥିଲା । ଆଶା ଥିଲା, କଳ୍ପନା ବି ଥିଲା । ଏ ବର୍ଷ ପୁଅଟାକୁ ଯେମିତି ହେଲେ ବାହା ଦେବାକୁ ହେବ । କନ୍ୟା ଠିକ୍ ହେଇସାରିଛି । ପଇସାପତ୍ର ଯୋଗାଡ କଲେ ହେଲା । ମକା ବିକ୍ରି ପଇସା ଉପରେ ଆଶା । କୋଡ଼ିଏ ହଜାର ଜଲା ଟଙ୍କା ଛିଡିଛି ।

ମକା ବସ୍ତା ସବୁ ଲୋଡ କରିସାରି ହିସାବ କଲା ସାଉକାର । ଆଗରୁ ଲଛମନ ନେଇଥିବା ପଇସା କଟି ଆଉ ପାଞ୍ଚ ହଜାର ପାଇବ । ଏ ବର୍ଷ ମକାର ରେଟ୍ ନାହିଁ । ଆଗର ରେଟ୍ ଠିକ୍ ହେଇଥିଲା ବୋଲି ସେ ସେତିକିରେ ନେଲା ନହେଲେ ଆହୁରି କମ୍‌ରେ ସେ ନେଇଥାନ୍ତା । ତାର ଏ ବର୍ଷ ବହୁତ କ୍ଷତି ହେଇଗଲା ବୋଲି କହିଲା । ସେ ଲଛମନ ହାତକୁ ପାଞ୍ଚହଜାର ଟଙ୍କା ବଢେଇଦେଲା ।

ଲଛମନ ମୁଣ୍ଡରେ ବଜ୍ର ପଡ଼ିଗଲା । ବିକଳ ହେଇ କହିଲା, ସାଉକାର ! ଏଇ ମକାପାଇଁ ତ ମୋର ଅନ୍ୟ ଫସଲ ସବୁ ମାରାଗଲା । ଏଇ ପାଞ୍ଚ ହଜାର ଟଙ୍କାରେ ବର୍ଷଟାଯାକ କେମିତି ଚଳିବେ ମୋ ପିଲା ମାଇଜୀ ? କ'ଣ ଖାଇବେ, କ'ଣ ପିନ୍ଧିବେ ?

ସାହୁକାର କହିଲା-ମୋର ତ ବି ପିଲାମାଇଜୀ ଅଛନ୍ତି । ମୁଁ କ'ଣ କରିବି ? ମୁଁ ତ ଏବର୍ଷ ପୁରା ବୁଡିଗଲି । ମୋର ମୂଳ ପଇସା ଉଠିଲାନି । ଗାଡ଼ି ଷ୍ଟାର୍ଟ କଲା ଡ୍ରାଇଭର୍ । ସାଉକାର ଉଠିଗଲା ଗାଡ଼ି ଉପରକୁ । ଖାଇବା ଆଗରୁ ଭାତଥାଳି ଉଠେଇ ନେଇଯିବା କଷ୍ଟ ଅନୁଭବ କଲେ ସାରା ପରିବାର । ଲଛମନ ହତାଶ ହେଇଗଲା । ନିଜ ଭାବ ଗୋପନ ରଖି ସ୍ତ୍ରୀ ପିଲାମାନଙ୍କୁ ବୁଝେଇଲା । ଏ ବର୍ଷ ଆଉ ସାଉକାରଠୁଁ ଆଗୁଆ ପଇସା ଆଣିବାନି । ଆମେ ଚାଷ କରିବା । ମକା ଅନ୍ୟ ବେପାରୀଙ୍କୁ ଦେବା । ସୋମନାଥ କହିଲା-ଏ ଶଳା ସାଉକାର ମହା ପଟ୍‌କାର । ବୁଢୀ ସୁଁ ସୁଁ ହେଇ କାନ୍ଦିଲା ଆଉ କହିଲା, ମୋ ପିଲାଙ୍କ ମୁହଁରୁ ଆହାର ଛଡ଼େଇନେଲା ମରୁଡ଼ିଖିଆ । ତାକୁ ମରୁଡ଼ି ଖାଉ, ତାକୁ ଗାଡ଼ି ଚେପୋଉ । ସାନ ପୁଅଝିଅ ଦୁଇଟା କେବଳ ଡବ୍ ଡବ୍ ହେଇ ଚାହିଁ ରହିଥିଲେ । ଗତବର୍ଷ ମକା ଅମଳ ପରେ ବାପଠାରୁ ମିଳିଥିବା ମୋବାଇଲ୍‌ଟା ଖରାପ ହେଇ ଆସିଲାଣି । ଏ ବର୍ଷ ନୂଆ ଗୋଟିଏ କିଣିବ ବୋଲି ସାନପୁଅ ଆଶା କରିଥିଲା ସେ ଆଶା ମରିଗଲା ।

ଝିଅଟାର ଆଖିରୁ ଦୁଇଧାର ଲୁହ ନିଗିଡ଼ି ପଡ଼ିଲା । ମକା ଅମଳ ପରେ ତା ପାଦକୁ ହଳେ ରୂପା ପାଉଁଜି କିଣିଦବ ବୋଲି ମାଆ କହିଥିଲା ତାକୁ ।

ତା ପରବର୍ଷକୁ ଦରକାର ପଡ଼ିଲା ବିହନ, ଖତସାର, ଇଉରିଆ, ପଟାସ୍ ସାର । ବୁଢ଼ୀର ସୋରିଷିଆ ମାଳ ବନ୍ଧା ପଡ଼ିଲା । ପରିବାର ବସି ବିଚାର କଲେ ସାଉକାର ଘରୁ ଆଗତ କାଢ଼ିଆ କରିବା ନାହିଁ । ଶେଷବେଳକୁ ଆହୁରି ପଇସା ନିଅଣ୍ଟ ହେଲା । ଝିଅର ନାକରେ ଥିବା ଲବଙ୍ଗ କଢ଼ୀ ବି ହଜାରେ ଟଙ୍କାରେ ବନ୍ଧା ପଡ଼ିଲା । ଅମଳ ବେଳକୁ କିନ୍ତୁ ଅଧା ବି ହେଲା ନାହିଁ ମକା । ଜାଣିବା ଶୁଣିବା ଲୋକେ କହିଲେ ମାଟି ମାଆ କୋପ କଲା । ତା ଶରୀରରେ ବିଷ ପକେଇଲ । ଇଉରିଆ ପଟାସ୍ ଦେଇ ଜବରଦସ୍ତି ତାଠୁଁ ଫସଲ ଆଦାୟ କଲ । ସେ କେତେ ସହିବ ? ସେ ରିଷା ହେଲା । ସ୍ୱାର୍ଥପର ମଣିଷମାନଙ୍କ ପାଖରୁ ମୁହଁ ବୁଲେଇଦେଲା ।

ଲଛମନ ଅମଳ ହେଇଥିବା ମକାତକ ହାଟରେ ବିକିଲା । ଯାହା ଆସିଲା ସେଥିରେ ବୁଢ଼ୀର ହାର ମୁକୁଳେଇଲା । ଝିଅର ଲବଙ୍ଗ କଢ଼ୀ ମୁକୁଳେଇଲା । ଏସବୁ ପରେ ଆଉ ଟଙ୍କାଟିଏ ବି ତା ହାତରେ ବଳିଲା ନାହିଁ । ସେ ଅଣ୍ଟା ଭିଡ଼ିଲା । ପୁଅମାନଙ୍କୁ ସାଙ୍ଗରେ ନେଇ ଜମିକୁ ଗଲା । ସୋମନାଥ ହଳ ଯୋଚିଲା । ବୁଢ଼ା ହିଡ ମୁଣ୍ଡରେ ଠିଆ ହେଇ ଦେଖୁଥିଲା । ମାଟି ମାଆ ଅଭିମାନରେ ମୁହଁମାଡ଼ି ପଡ଼ିଛି । ତା ଅଭିମାନ ଭାଙ୍ଗିବାକୁ ପଡ଼ିବ । ଧାନ ପଲା ପକାଇଲା ଜମିରେ । ମାଣ୍ଡିଆ ପଲା ପକେଇଲା । କାନ୍ଦୁଲ ବୁଣିଲା । ବିରିମୁଗ ସୋରିଷ କୋଳଥ ବୁଣିଲା । ଜହ୍ନି, କାକୁଡ଼ି, ଝୁଡ଼ଙ୍ଗ, ବୋଇତାଳୁ ଲଗାଇଲା । କିଛି ଲାଭ ହେଲା ନାହିଁ । ଧାନ ଗଛ ରୁଣ୍ଡା ମାରିଗଲା । ମାଣ୍ଡିଆ ଗଛ ହଳଦିଆ ହେଇଗଲା । କାନ୍ଦୁଲ କୋଳଥରେ ଜଉପୋକ ଲାଗିଲେ । ଜହ୍ନି କାକୁଡ଼ି ବୋଇତାଳୁ ଚିତ୍ରା ଚିତ୍ରା ହେଇଗଲେ । ବାଇଗଣ ଭେଣ୍ଡି ପତ୍ର ମୋଡ଼ା ଦେଲେ । ଶିମ୍ୱ ଲାଉ ହାତେ ହାତେ ଲଟେଇ ଥକିଗଲେ । ବିକଳାଙ୍ଗ ହେଇପଡ଼ିଛି ମାଟିଟା । ଦୁଃଖିନୀ ନିରିମାଖୀଙ୍କ ପରି । ମୁଣ୍ଡରେ ହାତଦେଇ ବସିପଡ଼ିଲା ଲଛମନ । ଯୋଉ ମାଟି ପିଢ଼ିପିଢ଼ି ଧରି ତା ପରିବାର ମୁହଁରେ ଦାନା ଦେଇ ଆସୁଥିଲା ସେ କାଙ୍ଗାଳିନୀ ହେଇ ପଡ଼ିରହିଛି । ନିଜ ଅସମର୍ଥ ପଣରେ ମୁହଁମାଡ଼ି ଦୀର୍ଘଶ୍ୱାସ ଛାଡ଼ୁଛି । ଲଛମନ ଆଖିରୁ ଦୁଇଧାର ଲୁହ ଗଡ଼ିଗଲା । ସେ ଡୁମା (ପ୍ରେତାତ୍ମା) ଧରିଲା ପରି ବସିବା ଜାଗାରୁ ହୁ କିନା ଉଠିପଡ଼ିଲା । ପାଗଳଙ୍କ ପରି ଘର ଆଡ଼େ ଧାଇଁଲା ।

ଜମିକୁ ଶାନ୍ତ କରିବାକୁ ହେବ । ପୂଜା ପୂଜି ଦେବାପାଇଁ ପଡ଼ିବ । ତାର ପୂର୍ବ ଅବସ୍ଥା ନ ଫେରେଇ ଆଣିଲେ ତା ରିଷା ଶାନ୍ତ ହେବ ନାହିଁ । ପୂଜା ସାମଗ୍ରୀ ଯୋଗାଡ଼ କଲା । ନଡ଼ିଆ, କଦଳୀ, କୁକୁଡ଼ା ଅଣ୍ଡା, ମଦ, କୁକୁଡ଼ା, ଦୀପ, ଫୁଲ, ଅରୁଆ ଚାଉଳ, ସଜାଡ଼ି ରଖିଲା । ଝୁଣାଦାନୀରେ ଝୁଣା ଧୂଆଁ ଦେଲା । ହାଉ ହାଉ ଧୂଆଁ ବାହାରିଲା । ବଳି କୁକୁଡ଼ାକୁ ଅରୁଆ ଚାଉଳ ଖୁଆଇ ତା ବେକ କାଟି ରକ୍ତ ଢାଳିଦେଲା ମାଟି ଉପରେ । ବୋତଲଟାଯାକ ମଦ ବି ନିଗାଡ଼ିଦେଲା । ସେଇ ରକ୍ତଭିଜା ମାଟିରୁ ଟିକେ ଆଣି ମୁଣ୍ଡରେ ମାରିଲା । ବଂଶଟା

ଯାକ ସମସ୍ତଙ୍କ ମୁଣ୍ଡରେ ସେଇ ମାଟିରୁ ଟିକେ ଟିକେ ଲଗେଇଦେଲା । ବଅଁଶଟା ସାରା ଲୋକ ମାଟିରେ ମୁଣ୍ଡ ମାଡ଼ି ଧରତୀ ମାଆକୁ ଜୁହାର ହେଲେ । ଲଛମନ ଆଖି ବନ୍ଦ କରି ଆଣ୍ଠେଇ ପଡ଼ିଲା । ଦୁଇହାତ ଯୋଡ଼ି କହିଲା-ମା-ଲୋ- ମୁଁ ତୋ ପ୍ରତି ଅନ୍ୟାୟ କରିଛି । ମୋତେ କ୍ଷମା କରିଦେ ଲୋ ମା । ତତେ ଜୁହାର ହେଉଛି । ମୋ ପରିବାର ମୁହଁରେ ହସ ଫେରେଇ ଦେ । ତା ଆଖିରୁ ଧାର ଧାର ଲୁହ ନିଗିଡ଼ି ପଡ଼ିଲା । ସେଇ ବନ୍ଦ ଆଖି ଭିତରେ ସେ ଦେଖିଲା ଏକ ଅଜବ ଦୃଶ୍ୟ । ଏକ ଅଭାବିତ ଅନୁଭବ । ମାଟି ମାଆ ଗୁଲ୍‌ଗୁଲା ହେଇ କାନ୍ଦୁଛି । ତା କହରିଆ କେଶ ଅଲରା ହେଇ ଉଡୁଛି । ତା ଦେହସାରା ଆମ୍ପୁଡ଼ା ରାମ୍ପୁଡ଼ା ଦାଗ । ପିନ୍ଧିଛି ଛିଣ୍ଡା ମଇଳା କୋଚଟ ଶାଢୀ । ସେ କୋହଭିଜା କଣ୍ଠରେ କହୁଛି-ମୁଁ ପାରିବିନିରେ ଲଛମନ । ମୁଁ ବାଂଝନୀ ହେଇଗଲି । ସେ ମକା ରାକ୍ଷସ ମୋର ସବୁ ବଳବପୁ ହରଣ କରିନେଇଗଲା । ମୋ ଇଜ୍ଜତ ମହତ୍ ସବୁ ନେଇଗଲା । ମତେ ଅପବିତ୍ର କରିଦେଲା । ଅରକ୍ଷିତ କରି ଫିଙ୍ଗିଦେଇଛି ରେ ବେଟା । ମୋ ପାଖରେ ତତେ ଦେବା ପାଇଁ ଆଉ କିଛି ନାଇଁ । ଚିପୁଡା ନିଗିଡା ହେଇଥିବା ଧଡ ମୁହଫେଣା ପରି ମୁଁ ଶୂନ୍ୟ ହେଇଯାଇଛି ।” ବିଚଳିତ ହୋଇପଡ଼ିଲା ଲଛମନ । ଧୀରେ ଧୀରେ ଆଖି ଖୋଲିଲା । ତା ଶୂନ୍ୟ ଦୃଷ୍ଟି ଆଉ ଥରେ ତା ଭାତହାଣ୍ଡି ସେଇ ଜମି ଖଣ୍ଡକ ଆଡେ ଲମ୍ବିଗଲା । ଦୃଷ୍ଟି ଫେରାଇ ଆଣି ଦେଖିଲା, ତାର ଦୁଇ ପୁଅ ଝିଅ ଓ ସ୍ତ୍ରୀ ତା ଆଡ଼କୁ ଅନେଇ ଠିଆ ହେଇଛନ୍ତି । ସମସ୍ତେ ଦିଶୁଛନ୍ତି କ୍ଳାନ୍ତ, ଅସହାୟ ।

ଲଛମନ ଦଣ୍ଡ ବୈଠକ କଲାପରି ସେଇ ମାଟି ଉପରେ ଦୁଇ ଚାରିଗଡ଼ା ଦେଇ ବିଳପି ଉଠିଲା-ମାଆ-ମାଆଲୋ । ମୋ ଧରତୀ ମାଆ, ମୁଁ ଅପରାଧ କରିଛି । ମତେ କ୍ଷମା କରିଦେ ଲୋ ମାଆ । ମୁଁ ତୋର ଏ ଦୁଃଖ ଆଉ ଦେଖିପାରୁ ନାହିଁଲୋ ମାଆ । ସେମିତି ଲୁହଲାଳ ହେଇ ସେ ଉଠିପଡ଼ି ନିଜ ପରିବାର ଲୋକଙ୍କୁ କୁଣ୍ଢେଇ ଧରି ପାଗଳଙ୍କ ପରି ଆକାଶ ଆଡ଼କୁ ମୁହଁ ଟେକି କହିଲା, ହେ ଧରମ୍ ଦେବତା, ତୁ ସାକ୍ଷୀ ରହିଲୁ । ଆମେ ବଅଁଶଟା ଯାକ ଝାଳ ରକତ ବୁହାଇଦେବୁ ଏ ମାଟିରେ । ହାଡମାଉଁସ ମିଶେଇଦେବୁ, ମାଟି ସାଙ୍ଗରେ ମାଟି ହେଇଯିବୁ । ଖତସାର ହେଇ ଲୋଟିପଡ଼ିବୁ ତା କୋଳରେ । ତା ପୁରୁବର ରୂପ ଆମେ ଫେରାଇ ଆଣିବୁ । ତାକୁ ଉଠିଆ କରିବୁ । ସେ ପୁଣି ହସିବ । ଯେମିତି ହସୁଥିଲା ଆଗରୁ ।

ବଂଶଟାଯାକ ଢଳକା ହେଇ ଚାହିଁ ରହିଥିଲେ ଲଛମନକୁ । ଲଛମନ ତଥାପି ପାଗଳଙ୍କ ପରି ପ୍ରଳାପ କରି ଚାଲିଥିଲା ।

ମୋର୍ କଥା ଫିଟିବ ନାଇଁ ଲୋ ଧରତୀ ମାଆ । ତୁ ହସିବୁ । ଆମକୁ ହସେଇବୁ ।

ସାରା ଦୁନିଆକୁ ହସେଇବୁ । ତୋର ଆଉ ଏ ହୀନିମାନ ରୂପ ରହିବ ନାଇଁ ଲୋ ମାଆ ଧରତୀ ରାଣୀ । ତୁ ପୁଣି ରାଜରାଣୀ ହେବୁ । ଲକ୍ଷ୍ମୀ ଠାକୁରାଣୀ ପରି ।





## ଲେଖିକାଙ୍କ ଅନ୍ୟାନ୍ୟ ସୃଷ୍ଟି

### ଗଳ୍ପ ସଂକଳନ

ଗାଜଜେମା ବିଲେଇ ଓ କୁଲି ପ୍ରସଙ୍ଗ

ସୁଲି ଅପାର ଭାତୁଡ଼ି

ନିର୍ବାଚିତ ଗଳ୍ପ

ନୀଳଶୈଳର ପଦଚାରୀ

ପିତୃ ଋଣ

ମଣିଷର ଦୈନନ୍ଦିନ ଜୀବନରେ
ଆଶା-ଆକାଂକ୍ଷା,
ପ୍ରେମ-ଭଲପାଇବା,
ଅବସାଦ-ଅର୍ଥନୈତିକ ସଂକଟ,
ପ୍ରାପ୍ତି-ଅପ୍ରାପ୍ତିର କଥା
ଫୁଟି ଉଠିଛି
ତାଙ୍କ ଗଳ୍ପ ଗୁଡ଼ିକରେ ।




**ବାସନ୍ତୀ ମହାନ୍ତି**

ଜନ୍ମସ୍ଥାନ-ଅନ୍ଦୁଳି, ଜିଲ୍ଲା-କେନ୍ଦ୍ରାପଡ଼ା


ଡ. ବାସନ୍ତୀ ମହାନ୍ତି ଓଡ଼ିଆ ସାହିତ୍ୟରେ ଏକ ବହୁ ପରିଚିତ ବ୍ୟକ୍ତିତ୍ୱ । ସାହିତ୍ୟର ବିଭିନ୍ନ ବିଭାଗ ଉପରେ ଲେଖନୀ ଚାଳନା କରି ପ୍ରଚୁର ପାଠକୀୟତା ହାସଲ କରିଥିଲେ ସୁଦ୍ଧା ତାଙ୍କର କଥା ସାହିତ୍ୟରେ ଅନନ୍ୟ ଦକ୍ଷତା ବାରି ହୋଇପଡ଼େ । ତାଙ୍କ କଥାଶିଳ୍ପ କଳ୍ପନା ପ୍ରସୂତ ନୁହେଁ, ନିଛକ ବାସ୍ତବତାର ଭିତ୍ତିଭୂମି ଉପରେ ଚରିତ୍ର ଓ ଘଟଣାମାନଙ୍କ ସହ ନିବିଡ଼ ସଂପୃକ୍ତି ତାଙ୍କ ଗଳ୍ପଗୁଡ଼ିକର ବିଶେଷତ୍ୱ । ସୁଦୃଢ଼ କଥାବସ୍ତୁ ଭାବାନୁସାରୀ ଭାଷା ଓ କଳାତ୍ମକ ଉପସ୍ଥାପନାରେ ସେ ଅନୁପମ ବିନ୍ଧାଣୀ । ଭାଷା ତାଙ୍କର ସହଜ ସ୍ୱତଃସ୍ଫୂର୍ତ ଓ ଜୀବନପରି ବ୍ୟାପକ ।

ଶିଷ୍ଟଭାଷା ସହ ପଲ୍ଲୀଭାଷା ଓ ଅଧୁନା ଲୁପ୍ତପ୍ରାୟ କେତକ ଶବ୍ଦ ସମୂହର ଅପୂର୍ବ ସଂଯୋଜନାରେ ତାଙ୍କ ଗଳ୍ପଗୁଡ଼ିକ ରସୋତୀର୍ଣ୍ଣ । ସଭ୍ୟ ସମାଜର ଅବହେଳିତ ଅନାଦୃତ ଓ ନିପୀଡ଼ିତ ଚରିତ୍ରମାନେ ତାଙ୍କ ଗଳ୍ପରେ ମହାମର୍ଯ୍ୟାଦାର ଅଧିକାରୀ ହୋଇଛନ୍ତି । ଅଭିଯୁକ୍ତା ଗଳ୍ପ ସଂକଳନରେ ଏହି ସତ୍ୟ ପ୍ରକଟିତ । ଦ୍ୱିତୀୟ ସଂସ୍କରଣ ଅବସରରେ ଆଶା କରୁଛି ଏହା ମଧ୍ୟ ବିପୁଳ ପାଠକୀୟତା ହାସଲ କରିବ ।

- ପ୍ରକାଶକ


PCI

**ପି.ସି.ଆଇ. ପବ୍ଲିକେଶନ**

୩୨, ଖାରବେଳ ନଗର, ୟୁନିଟ୍-୩, ଭୁବନେଶ୍ୱର-୧

ଦୂରଭାଷ : (୦୬୭୪) ୬୫୩୭୭୧୩, ମୋ : ୯୮୬୧୦୧୩୯୨୨